# ଭକ୍ତକବି ଭୀମଭୋଇ



ମହିମାଗାଦି ମନ୍ଦିର

# ଭକ୍ତକବି ଭୀମଭୋଇ

ଲେଖକ :

ଅଧ୍ୟାପକ ସର୍ବେଶ୍ୱର ଦାଶ

ବିଶ୍ୱବିଦ୍ୟା ପ୍ରକାଶ [illegible]

ପ୍ରକାଶକ :

ବିଶ୍ୱବିଦ୍ୟା ପ୍ରକାଶ, କଟକ

ମୁଦ୍ରକ :

ଗ୍ରାମସେବକ ସମବାୟ ପ୍ରକାଶନ ଲି,

ବାଖରାବାଦ, କଟକ-୭୫୩୦୦୨

ପ୍ରଥମ ମୁଦ୍ରଣ : ମାର୍ଚ୍ଚ, ୧୯୯୩

ମୂଲ୍ୟ : ଟ ୧୮-୦୦

[redacted]

# ସୂଚୀପତ୍ର

# ଭୀମଭୋଇଙ୍କ ଜୀବନବୃତ୍ତାନ୍ତ

ଓଡ଼ିଆ ଗୀତିକବିତା ଓ ଆଧ୍ୟାତ୍ମିକ ସାହିତ୍ୟକୁ ଭକ୍ତକବି ଭୀମଭୋଇଙ୍କର ଦାନ ଅତୁଳନୀୟ । ଓଡ଼ିଶାର ଧାର୍ମିକ ଓ ନୈତିକ ଜୀବନରେ ସେ ନବଜାଗରଣ ଆଣିଥିଲେ ଏବଂ ନୂତନ ମୂଲ୍ୟବୋଧ ସୃଷ୍ଟି କରିଥିଲେ । ସେ ଥିଲେ ସତ୍ୟ ମହିମାଧର୍ମର ଆଦି ପ୍ରବକ୍ତା । ପ୍ରବୁଦ୍ଧଗୁରୁ ମହିମା ସ୍ୱାମୀ ଏହି ଧର୍ମର ପ୍ରତିଷ୍ଠାତା ହେଲେହେଁ ସେ ନିଜର କୌଣସି ଗ୍ରନ୍ଥ ଛାଡ଼ିଯାଇନାହାନ୍ତି । ଭୀମଭୋଇ ତାଙ୍କର ଶିକ୍ଷା ଓ ଉପଦେଶାବଳୀକୁ ନିଜର କବିତା ମାଧ୍ୟମରେ ଲୋକରେ ପ୍ରଚାର କରି ଏହି ଧର୍ମର ପ୍ରାଣପ୍ରତିଷ୍ଠାରେ ବିଶେଷ ସହାୟକ ହୋଇଅଛନ୍ତି । ଭୀମଭୋଇଙ୍କ ବିନା ମହିମାଧର୍ମ ହୁଏତ ଚିରକାଳ ଲାଗି ଲୋକଲୋଚନର ଅନ୍ତରାଳରେ ରହିଯାଇଥାନ୍ତା ।

**ଜନ୍ମ**—କିନ୍ତୁ ଅତି ପରିତାପର ବିଷୟ ଯେ ଭୀମଭୋଇଙ୍କ ଜୀବନବୃତ୍ତାନ୍ତ ସମ୍ବନ୍ଧରେ ବିଶେଷ କିଛି ତଥ୍ୟ ଏ ପର୍ଯ୍ୟନ୍ତ ମିଳିନାହିଁ । ତାହାଙ୍କ ରଚନାବଳୀ ମଧ୍ୟରେ ଇତସ୍ତତଃ ବିକ୍ଷିପ୍ତ ଆତ୍ମଚରିତମୂଳକ ଉକ୍ତି ଏବଂ ମହିମାଧର୍ମାବଲମ୍ବୀ ସାଧୁସନ୍ଥମାନଙ୍କ ମଧ୍ୟରେ ପ୍ରଚଳିତ କାହାଣୀ ଓ କିମ୍ବଦନ୍ତୀ ହିଁ ତାଙ୍କର ଜୀବନ ବୃତ୍ତାନ୍ତ ଆଲୋଚନାରେ ଆମର ପ୍ରଧାନ ଅବଲମ୍ବନ ।

ଭୀମଭୋଇ ସମ୍ବଲପୁର ଜିଲ୍ଲା ଅନ୍ତର୍ଗତ ରେଢ଼ାଖୋଲ ନାମକ ତତ୍କାଳୀନ ଏକ କ୍ଷୁଦ୍ର କରଦ ରାଜ୍ୟର ଗ୍ରାମ ଡିହ ବା କଙ୍କଣପଡ଼ା ନାମକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ବୋଲି ବୁଝାଯାଏ । ତାଙ୍କର ଜନ୍ମ ସମ୍ବନ୍ଧରେ ଆହୁରି ଦୁଇଗୋଟି କିମ୍ବଦନ୍ତୀ ମଧ୍ୟ ପ୍ରଚଳିତ ଅଛି । ସେଥିରୁ ଗୋଟିଏ ହେଉଛି ଯେ ବଲାଙ୍ଗିର ଜିଲ୍ଲାର କଣ୍ଟାସିଂଘା ଗ୍ରାମର ଅଦୂରବର୍ତ୍ତୀ ଏକ ତାଳବଣିଆରୁ ଦାନରା ଓ ଗୁରୁବାରି ନାମକ ଏକ କନ୍ଧଦମ୍ପତି ପରିତ୍ୟକ୍ତ ଗୋଟିଏ ଶିଶୁକୁ ପାଇ ତାର ଲାଳନପାଳନ ଭାର ଗ୍ରହଣକରିଥିଲେ । ଏହି ଅନାଥ ଶିଶୁ ହିଁ ଥିଲେ ଭୀମଭୋଇ ।

ଦ୍ୱିତୀୟ କିମ୍ବଦନ୍ତୀଟି ହେଲା—ଭୀମଭୋଇ ଢେଙ୍କାନାଳ ଜିଲ୍ଲା ଅନ୍ତର୍ଗତ ବୀର ମହାରାଜପୁର ଥାନାର କଣ୍ଟାଶିଙ୍ଗା ଗ୍ରାମର ଅନାଦି ଗୁରୁଙ୍କ ଗୃହରେ ଜନ୍ମଗ୍ରହଣ କରିଥିଲେ । ଜନାର୍ଦ୍ଦନ ଭୋଇ ଓ ମହୁରଗୀ ନାମକ ଏକ କନ୍ଧଦମ୍ପତି ଶିଶୁ ଅବସ୍ଥାରୁ ତାଙ୍କର ଲାଳନ ପାଳନ ଦାୟିତ୍ୱ ଗ୍ରହଣ କରିଥିଲେ । ବାଲ୍ୟକାଳରେ ଭୀମଙ୍କର ପାଳକ ପିତା ଜନାର୍ଦ୍ଦନ ଭୋଇ ଇହଧାମ ତ୍ୟାଗକରିଥିଲେ । ଏହାପରେ ବାଳକ ଭୀମ ପାଳକ ପିତା ଜନାର୍ଦ୍ଦନ

ଭୋଇଙ୍କ ସାନଭାଇ ଧନେଶ୍ୱର ଭୋଇଙ୍କ ପାଖରେ ରେଢ଼ାଖୋଲର କଙ୍କଡ଼ପଡ଼ା ଗ୍ରାମରେ ଜୀବନ ଅତିବାହିତ କରିଥିଲେ ।

ଭୀମଭୋଇ ସ୍ତୁତିଚିନ୍ତାମଣି ଗ୍ରନ୍ଥରେ ଉଲ୍ଲେଖ କରିଅଛନ୍ତି ଯେ ତାଙ୍କର ପିତା ତାଙ୍କର ବାଲ୍ୟଜୀବନରେ ପ୍ରାଣ ତ୍ୟାଗ କରିଥିଲେ ଏବଂ ସେଥିପାଇଁ ତାଙ୍କୁ ସହାୟସ୍ୱସ୍ଥାନ ଭାବରେ ଘୋର ଦୁଃଖରେ କାଳ ଯାପନ କରିବାକୁ ହୋଇଥିଲା । ଭୀମଭୋଇଙ୍କର ଅନ୍ୟ ଏକ ଉକ୍ତିରୁ ଜଣାଯାଏ ଯେ ସେ ଯାହାଙ୍କୁ ନିଜର ପିତା ବୋଲି ଜାଣିଥିଲେ ସେ ଥିଲେ ତାଙ୍କର ପାଳକ ପିତା । "ସର୍ବେ ବୋଲୁଛନ୍ତି ପରପୁତ୍ର ହୋଇ ଆପଣାର ପୁତ୍ର କଲା ।" —ଏହି ବିବୃତିରୁ ଅନୁମିତ ହୁଏ ଯେ ପୂର୍ବୋକ୍ତ କିମ୍ବଦନ୍ତୀରେ କିଛି ସତ୍ୟ ଥାଇପାରେ ।

ଭୀମଭୋଇ କେବେ ଜନ୍ମଗ୍ରହଣ କରିଥିଲେ ସେ ବିଷୟରେ ମଧ୍ୟ କୌଣସି ସଠିକ ତଥ୍ୟ ମିଳେ ନାହିଁ । ବ୍ରହ୍ମାବଧୂତ ବିଶ୍ୱନାଥବାବା ସ୍ୱରଚିତ 'ମହିମାଧର୍ମର ଇତିହାସ' ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ ୧୮୬୫ ଖ୍ରୀଷ୍ଟାବ୍ଦରେ କଟକ ଜିଲ୍ଲା ଅନ୍ତର୍ଗତ ଆଠଗଡ଼ର ଖୁଣ୍ଡୁଣି ଗ୍ରାମଠାରେ ପ୍ରଭୁଙ୍କଗୁରୁ ମହିମାସ୍ୱାମୀଙ୍କ ଆଦେଶ କ୍ରମେ ମହିମା ବାଲ୍ୟଲୀଳା ଅନୁଷ୍ଠିତ ହୋଇଥିଲା ଏବଂ ସେହି ଉତ୍ସବରେ ଭୀମଭୋଇଙ୍କ ରଚିତ ସ୍ତୁତି ଓ ଜଣାଣ ଗାନକରାଯାଇ-ଥିଲା । ଭୀମଭୋଇ ଷୋଳବର୍ଷ ବୟସରେ ସର୍ବପ୍ରଥମେ କବିତା ରଚନାରେ ବ୍ରତୀ ହୋଇଥିବା କଥା ତାଙ୍କ ଗ୍ରନ୍ଥମାନଙ୍କରୁ ଜଣାଯାଏ । ପୁନଶ୍ଚ ଭୀମଭୋଇ '୮୬୨ ଖ୍ରୀଷ୍ଟାବ୍ଦରେ ମହିମା ସ୍ୱାମୀଙ୍କ ଦ୍ୱାରା ମହିମାଧର୍ମରେ ଦୀକ୍ଷିତହୋଇଥିବା କଥା ମହିମାଧର୍ମର ଇତିହାସରୁ ଜଣାଯାଏ । ସେତେବେଳକୁ ତାଙ୍କର ବୟସ ହୋଇଥିଲା ପନ୍ଦରବର୍ଷ । ଏଣୁ ଭୀମଭୋଇ ୧୮୪୭-୧୮୪୯ ମଧ୍ୟରେ ଜନ୍ମଗ୍ରହଣ କରିଥିବା ଖୁବ୍ ସମ୍ଭବ ।

**ଅନ୍ଧତ୍ୱ**—ଅଚ୍ୟୁତାନନ୍ଦ ଦାସଙ୍କ 'ପଦ୍ମକଳ୍ପ ଗୀତା' ଓ ଶ୍ରୀଧର ଦାସଙ୍କ 'ସିଦ୍ଧଚନ୍ଦ୍ରିକା' ଗ୍ରନ୍ଥଦ୍ୱୟରେ ଉଲ୍ଲେଖ ଅଛି ଯେ ଭୀମଭୋଇ ଜନ୍ମାନ୍ଧ ଥିଲେ । ପରବର୍ତ୍ତୀ କାଳର ବହୁ ଲେଖକ ଓ ସମାଲୋଚକ ସେହି ପରମ୍ପରା ଅନୁସରଣରେ ଭୀମଭୋଇଙ୍କୁ ଜନ୍ମାନ୍ଧ ବୋଲି ମତ ପ୍ରକାଶ କରିଛନ୍ତି । କିନ୍ତୁ ଓଡ଼ିଆ ସାହିତ୍ୟର ପ୍ରଖ୍ୟାତ ଗାଳ୍ପିକ, ଔପନ୍ୟାସିକ ଓ ସାହିତ୍ୟ ସମାଲୋଚକ ସୁରେନ୍ଦ୍ର ମହାନ୍ତି ତାଙ୍କ ରଚିତ "ଓଡ଼ିଆ ସାହିତ୍ୟର କ୍ରମବିକାଶ" ନାମକ ପୁସ୍ତକରେ ଉଲ୍ଲେଖ କରିଅଛନ୍ତି ଯେ ଭୀମଭୋଇ ଅନ୍ଧ ନଥିଲେ । ଲେଖକ ଏ ବିଷୟରେ ତାଙ୍କ ସହିତ ସମ୍ପୂର୍ଣ୍ଣ ଏକମତ । ଏ ସମ୍ବନ୍ଧରେ ପ୍ରକୃଷ୍ଟ ପ୍ରମାଣ ହେଉଛି ଭୀମଭୋଇଙ୍କ ରଚନାବଳୀରେ ଇତସ୍ତତଃ ବିକ୍ଷିପ୍ତ ତାଙ୍କର ନିଜ ଉକ୍ତିଚୟ । ସ୍ୱଭବର୍ଷ ବୟସରେ ସେ ମହିମାସ୍ୱାମୀଙ୍କୁ ଗ୍ରାମେ ଗ୍ରାମେ ଅତିଥି ବେଶରେ ବୁଲୁଥିବାର ଦେଖିଥିଲେ । ଏ ପ୍ରସଙ୍ଗରେ ସେ ଉଲ୍ଲେଖ କରିଛନ୍ତି—"ବେନି ଭୁଜେ ପ୍ରତ୍ୟକ୍ଷେ ଦେଖିଅଛୁ ଥିଲା ଶଙ୍ଖ ଚକ୍ର ଚିହ୍ନ ।" "ନିର୍ବେଦ ସାଧନ" ଗ୍ରନ୍ଥରେ ସେ ଉଲ୍ଲେଖ କରିଛନ୍ତି ଯେ ନିଶାର୍ଦ୍ଧରେ ସେ ନିଜ ଗୃହରେ ଶୟନ କରିଥିବାବେଳେ ମହିମାସ୍ୱାମୀ ସ୍ୱ-ଶିଷ୍ୟ ଗୋବିନ୍ଦ ଦାସଙ୍କ ସହିତ ତାଙ୍କୁ ନିଦରୁ ଉଠାଇ ଦର୍ଶନ ଦେଇଥିଲେ । ଏହି ବିଷୟକୁ ଲକ୍ଷ୍ୟ କରି ସେ ଲେଖିଛନ୍ତି—

"ଚେତ ଉଠିଲ୍ ତତକ୍ଷଣ । ପାରୁଣେ ବଜେ ଶୂନ୍ୟବ୍ରହ୍ମ ॥
ଚକ୍ଷୁ ମେଲିଣ ଦେଲି ଗୃହିଁ । ସମାନ ଗୁରୁ ଶିଷ୍ୟ ଦୁଇ ॥"

ସେତେବେଳକୁ ଭୀମଙ୍କର ବୟସ ପ୍ରାୟ ୧୬ ବର୍ଷ । 'ସ୍ତୁତିଚିନ୍ତାମଣି' ଗ୍ରନ୍ଥରେ ଶରୀର ପାତକ ବର୍ଣ୍ଣନା ପ୍ରସଙ୍ଗରେ ସେ କହିଛନ୍ତି—

"ରୂପଗୁଣ ବର୍ଣ୍ଣ ଜାନୁ ଯଉବନ ନେତ୍ରେ ଯାହା ଅଛୁ ଦେଖି ।
ଶୋଭା ସୁନ୍ଦର ସୁରଙ୍ଗ ଦ୍ରବ୍ୟମାନ ଯାହା ଦେଖିଅଛୁ ଆଖି ॥
ବେଶ ଭୂଷଣ ବୟସ ଦ୍ରବ୍ୟମାନ ଭଲ ମନ୍ଦ ଆଦି ଯେତେ ।
କଳା ଗୋରା ରଙ୍ଗ ପିଙ୍ଗଳ ଶ୍ୟାମଳ ଦେଖିଅଛୁ ନେତ୍ର ପଥେ ॥
ଜନମ କାଳରୁ ଦେଖି ଅଛୁ ରୂପ ତହିଁର ଯେତେ ପାତକ ।
କୁହୁଡ଼ି ପରାଏ ବକଳ ଫିଟାଅ ଅଣାକାର ଅନର୍ଥାପ ।" ( ୭୧ ବୋଲି )

ଏକ ଭଜନରେ ସେ ଲେଖିଛନ୍ତି—

ନେତ୍ରେ ଦେଖି ଯେବେ ଭୋଳରେ ପଡ଼ିଲି ଅଜ୍ଞାନ ପଣରେ ମାତି
ରୂପ ଗୁଣ ନାହିଁ କିଛି ନ ଦେଖନ୍ତି ନେତ୍ର ଯାଇଥାନ୍ତା ଫୁଟି ॥"

ମହିମାସ୍ୱାମୀଙ୍କ ତିରୋଧାନ ପରେ ଏକ ଚଉତିଶାରେ ଗାଇଛନ୍ତି—

"ଅନ୍ଧାର ଦିଶୁଛି ନବଖଣ୍ଡ ମହୀ । ପ୍ରତ୍ୟକ୍ଷେ ଦେଖୁଥିଲି ନୟନ ପୁରାଇ ।"

ଆଉ ଏକ ଭଜନରେ ସେ ଲେଖିଛନ୍ତି—

"ପଞ୍ଚ ପ୍ରାୟ କରି ଉଡ଼ାଇ ନେଉଛ, ଏ ମୋ ବେଦ ନେତ୍ରେ ଦେଖୁ ଦେଖୁ ।"

ଅନ୍ୟ ଏକ ଚଉତିଶାରେ ସେ ଗାଇଛନ୍ତି—

"ସ୍ୱାମୀ ହେ, ଠିକେ କହେ ଭୀମ ଅର୍ଥିତ,
ଏହି ପାପନେତ୍ରେ ପ୍ରଭୁଙ୍କୁ ଦେଖିବି ଥିବ ଯେବେ ଭାଗ୍ୟ ବହୁତ ।"

ଏହାଛଡ଼ା ଭୀମ ଭୋଇ ଗୋରୁ ଚରାଉଥିବାର ଓ ଲେଖନୀ ସାହାଯ୍ୟରେ ତାଳପତ୍ରରେ ଲେଖୁଥିବା ବିଷୟ ମଧ୍ୟ ବିଭିନ୍ନ ପ୍ରସଙ୍ଗରେ ଉଲ୍ଲେଖ କରିଅଛନ୍ତି । ଭୀମ ଭୋଇ ଚକ୍ଷୁଷ୍ମାନ୍ ଥିବା ବିଷୟରେ ଏପରି ସୁସ୍ପଷ୍ଟ ଓ ସୁଦୃଢ଼ ପ୍ରମାଣ ଥିବାବେଳେ କେବଳ ପରଂପରାକୁ ଅନୁସରଣ କରି ତାହାଙ୍କୁ ଜନ୍ମାନ୍ଧ ବୋଲି କହିବା ଆଦୌ ଯୁକ୍ତିଯୁକ୍ତ ମନେହୁଏ ନାହିଁ । ଭୀମଭୋଇ ଅନ୍ଧତ୍ୱ ହେତୁ ଥରେ ଏକ ଶୁଷ୍କ ଜୀର୍ଣ୍ଣ କୂପରେ ପଡ଼ିଯାଇଥିବା କଥା ଏବଂ ମହିମା ସ୍ୱାମୀ ତାଙ୍କୁ ଉଦ୍ଧାରକରିଥିବା କଥା କେହି କେହି ଉଲ୍ଲେଖ କରିଥାନ୍ତି । କିନ୍ତୁ ତାହାଙ୍କ ରଚନାବଳୀରୁ ଏହାର ସୂଚନା ମିଳେ ନାହିଁ । ଗୋଟିଏ ସ୍ଥାନରେ ସେ ଉଲ୍ଲେଖ କରିଛନ୍ତି ଯେ ସେ ସଂସାର ରୂପ ଶୁଷ୍କ ଜୀର୍ଣ୍ଣ କୂପରେ ପଡ଼ି ସଢ଼ିଯାଉଛନ୍ତି । ଏଥିରୁ ସେ

ଏକ ଶୁଷ୍କ ଜୀର୍ଣ୍ଣକୂପରେ ପଡ଼ିଯାଇଥିବା କଥାର ସଫେଇ ମିଳୁନାହିଁ । କେତେକ ଲୋକ ଭୀମଭୋଇଙ୍କର ଏକ ଦୁଇଅର୍ଥବୋଧକ ଉକ୍ତିକୁ ଭିତ୍ତି କରି ତାଙ୍କୁ ଜନ୍ମାନ୍ଧ ବୋଲି କହିଥାନ୍ତି । ସେହି ଉକ୍ତିଟି ହେଉଛି—

"କାମନା କଳ୍ପନା ଶ୍ରୁତି ସୁମରଣା ବର୍ଣ୍ଣିବାକୁ ଅଛୁ କାହିଁ ।
ଜ୍ଞାନ ନେତ୍ର ଚକ୍ଷୁ ଏକମାତ୍ର ସାକ୍ଷୀ ଚର୍ମ ନେତ୍ରେ ଦିଶୁ ନାହିଁ ॥"

ଉପରୋକ୍ତ ପଦର ସାରାର୍ଥ ହେଉଛି ଯେ ଅରୂପ ଓ ଅବର୍ଣ୍ଣ ଶୂନ୍ୟବ୍ରହ୍ମଙ୍କର ସ୍ୱରୂପ ବର୍ଣ୍ଣନା ଚର୍ମନେତ୍ର ସାହାଯ୍ୟରେ କରିହେବା କଦାପି ସମ୍ଭବପର ନୁହେଁ । କେବଳ ଜ୍ଞାନ ନେତ୍ର ଦ୍ୱାରାହିଁ ତାହା ସମ୍ଭବପର । ଏଥିରୁ ଭୀମଭୋଇ ଅନ୍ଧ ଥିଲେ ବୋଲି ଟାଣିଓଟାରି ଅର୍ଥ କରିବା କଦାପି ସମୀଚୀନ ନୁହେଁ । ଉପରୋକ୍ତ ଉକ୍ତି ସମୂହରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଭୀମଭୋଇ କଦାପି ଅନ୍ଧ ନଥିଲେ—ଚକ୍ଷୁଷ୍ମାନ ଥିଲେ ।

**ଶିକ୍ଷା**—ଭୀମଭୋଇ ତାଙ୍କ ରଚନାବଳୀରେ ବହୁ ସ୍ଥାନରେ ଉଲ୍ଲେଖ କରିଅଛନ୍ତି ଯେ ସେ ଜନ୍ମରୁ ମୂର୍ଖ ଥିଲେ ଏବଂ ବେଦ ଓ ଶାସ୍ତ୍ରାଦି ଅଧ୍ୟୟନ କରିବାର ସୁଯୋଗ ପାଇନଥିଲେ ।

"ଜନ୍ମରୁ ମୂରୁଖ ଚର୍ମା ମହାଦୁଃଖ ବେଦ ଶାସ୍ତ୍ର ନାହିଁ ଜଣା,
ଭଣେ ଭୀମଭୋଇ ଗୁରୁପଦ ଧ୍ୟାୟୀ ଅରୂପ କରି ଭଜନା ।"

ଏଥିରୁ ଅନୁମିତ ହୁଏ ଯେ ଭୀମଭୋଇ କୌଣସି ବିଦ୍ୟାଳୟରେ ଆନୁଷ୍ଠାନିକ ଭାବରେ ଶିକ୍ଷାଲାଭର ସୁଯୋଗ ପାଇ ନଥିଲେ । ଭୀମଭୋଇଙ୍କ ପରି ସାରଳା ପ୍ରମୁଖ କବିଗଣ ମଧ୍ୟ ନିଜକୁ ମୂଢ଼ ଓ ମୂର୍ଖ ବୋଲି ବର୍ଣ୍ଣନା କରିଯାଇଛନ୍ତି । ଏହା ଥିଲା ସେ କାଳର କବି-ପରଂପରା । ଏହା ସେମାନଙ୍କର ବିନୟ ଓ ନମ୍ରତାର ପରିଚାୟକ । ତେଣୁ ସେ ସମ୍ପୂର୍ଣ୍ଣ ନିରକ୍ଷର ଓ ମୂର୍ଖଥିବା ଧାରଣା ଠିକ୍ ନୁହେଁ । କୌଣସି ବିଦ୍ୟାଳୟରେ ଅଧ୍ୟୟନ କରି ନଥିଲେ ହେଁ ଜୀବନ ଥିଲା ତାଙ୍କର ଶିକ୍ଷାୟତନ । ଜୀବନର ଅନୁଭୂତି, ପ୍ରାକୃତିକ ପରିବେଶ ଓ ସମାଜରୁ ସେ ଶିକ୍ଷା ଲାଭ କରିଥିଲେ ।

"ଶ୍ରୀଗୁରୁଙ୍କ ଠାରୁ ନୟନ ସଦ୍ଗୁଣ ବେଦ ଶାସ୍ତ୍ର ନାହିଁ ସାଧି ।
ଶୂନ୍ୟକୁ ଅନାଇ ପଦ ବଖାଣଇ ଅନୁଭବେ କରି ବୁଝି ।"

ତେଣୁ ଭୀମଭୋଇ ଜୀବନର ବିଶାଳ ଅନୁଭୂତିରୁ ଶିକ୍ଷା ଲାଭ କରିଥିଲେ । ସେ ତାଙ୍କର ପାଣ୍ଡିତ୍ୟ ସମ୍ବନ୍ଧରେ ସଚେତନ ମଧ୍ୟ ଥିଲେ । କୌଣସି ବିଦ୍ୟାଳୟରେ ଆନୁଷ୍ଠାନିକ ଭାବରେ ଶିକ୍ଷା ଲାଭ ନ କରି ମଧ୍ୟ ସେ ଶ୍ରୀଗୁରୁ କୃପାରୁ କବି ଓ ପଣ୍ଡିତ ହୋଇପାରିଥିଲେ ବୋଲି ତାହାଙ୍କ କାବ୍ୟ କବିତାରେ ବହୁ ସ୍ଥାନରେ ଉଲ୍ଲେଖ କରିଅଛନ୍ତି । ସେକାଳରେ ଗ୍ରାମମାନଙ୍କରେ ଭାଗବତଘର ଥିଲା ଏବଂ ସେଠାରେ ଶାସ୍ତ୍ର ପୁରାଣାଦି ପାଠ କରାଯାଉଥିଲା ।

ଭୀମଭୋଇ ସେ ସବୁ ଶୁଣିବାର ସୁଯୋଗ ଲାଭକରିଥିବା ଖୁବ୍ ସମ୍ଭବ । ଶୁଣାଯାଏ କଙ୍କଣପଡ଼ା ଗ୍ରାମର ଚୈତନ୍ୟ ପ୍ରଧାନ ନାମକ ଜଣେ ଧାର୍ମିକ ବ୍ୟକ୍ତି ଶିଶୁ ଭୀମଭୋଇଙ୍କୁ ପ୍ରତ୍ୟହ ଭାଗବତ ଘରକୁ ନେବାଆଣିବା କରୁଥିଲେ ଏବଂ ଅନ୍ୟ ସମୟରେ ମଧ୍ୟ ତାଙ୍କୁ ଧର୍ମଶିକ୍ଷା ଦେଉଥିଲେ । ଭୀମଭୋଇ ଜଣେ ପ୍ରତିଭାଧର ବ୍ୟକ୍ତି ଥିଲେ ଏବଂ ଦୁଇବର୍ଷ ବୟସରୁ ତାଙ୍କର ହେତୁବୁଦ୍ଧିର ଉଦୟ ହୋଇଥିଲା । ଏ ବିଷୟରେ ସେ ତାଙ୍କର "ସ୍ତୁତିଚିନ୍ତାମଣି" କାବ୍ୟରେ ଉଲ୍ଲେଖ କରିଅଛନ୍ତି । ଏପରି ଜଣେ ପ୍ରତିଭାଧର ବାଳକ ପକ୍ଷରେ ଅଣଆନୁଷ୍ଠାନିକ ଭାବରେ ଜ୍ଞାନ ଅର୍ଜନ କରିବା ଆଦୌ କଷ୍ଟକର ନୁହେଁ । ଜଗନ୍ନାଥ ଦାସଙ୍କ ଭାଗବତ ଥିଲା ତାଙ୍କର ଅତି ପ୍ରିୟ ଗ୍ରନ୍ଥ । ଏହି ଗ୍ରନ୍ଥର ବହୁପଦ ସେ କଣ୍ଠସ୍ଥ ରଖିଥିଲେ ଏବଂ ତାଙ୍କ ରଚନାବଳୀରେ ସେଗୁଡ଼ିକର ବ୍ୟବହାର କରିଥିଲେ । ସେହି ପଦଗୁଡ଼ିକ ହେଲା—

"ତୁ ନାଥ ପରମ ଦୟାଳୁ । ଦୁଷ୍ଟ ଜନର ସନ୍ତାପାଳୁ ॥
ଆପଣା ହସ୍ତେ ଜିହ୍ୱା ଛେଦ । ତାର କେ ଅଛି ପ୍ରତିବାଦ
ବ୍ରହ୍ମାଣ୍ଡ ମାଳ ମାଳ ହୋଇ । ତୋ ଲୋମ କୂପେ ବସିଜାଇ ॥"

ଏହାଛଡ଼ା ସେ ଭାଗବତର ବିବିଧ ଉପାଖ୍ୟାନ ବହୁସ୍ଥଳରେ ବର୍ଣ୍ଣନା କରିଅଛନ୍ତି । ଭୀମଭୋଇ ବୃନ୍ଦାବତୀଙ୍କର ଯେଉଁ ଉପାଖ୍ୟାନ ବର୍ଣ୍ଣନା କରିଛନ୍ତି ତାହା ସେ ଜଗନ୍ନାଥଦାସଙ୍କ ଭାଗବତରୁ ଗ୍ରହଣ କରିଛନ୍ତି । ଅବଧୂତଙ୍କ ଚବିଶଗୁରୁଙ୍କ ଅନୁସରଣରେ ସେ ପ୍ରକୃତି ଓ ସମାଜରୁ ଯାହା ଶିକ୍ଷା କରିଛନ୍ତି ତାହା ସ୍ତୁତିଚିନ୍ତାମଣି' ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ଏଥିରୁ ଜଣାଯାଏ ଯେ ସେ ଭାଗବତଗ୍ରନ୍ଥ ଉତ୍ତମରୂପେ ଅଧ୍ୟୟନ କରିଥିଲେ । ପିଣ୍ଡମୂଳ ସାରଳାଦାସ ଏବଂ ଦୀନକୃଷ୍ଣଦାସଙ୍କ ନାମ ସେ ତାଙ୍କ ରଚନାବଳୀରେ ଉଲ୍ଲେଖ କରିଛନ୍ତି । ସାରଳାଦାସଙ୍କ ମହାଭାରତରୁ ସେ ବହୁ ଉପାଖ୍ୟାନ ଉଦ୍ଧାର କରିଛନ୍ତି । ରାମାୟଣର ବହୁ ଉପାଖ୍ୟାନ ମଧ୍ୟ ସେ ଗ୍ରନ୍ଥମାନଙ୍କରେ ଅବତାରଣା କରିଛନ୍ତି । ଏଥିରୁ ଅନୁମିତ ହୁଏ ଯେ ସେ ସାରଳାଦାସଙ୍କ ମହାଭାରତ ଓ ବଳରାମ ଦାସଙ୍କ ରାମାୟଣ ଉତ୍ତମ ରୂପେ ଅଧ୍ୟୟନ କରିଥିଲେ । ଅଚ୍ୟୁତାନନ୍ଦଦାସଙ୍କ ଶୂନ୍ୟସଂହିତା ଗ୍ରନ୍ଥରୁ ଭୀମଭୋଇ ଜ୍ୟୋତିର୍ଜ୍ୱାଳା, ତ୍ରିକୁଟ, ବଙ୍କନାଳ, ଅଲେଖପାଟଣା, ଫୁଙ୍କାବନ୍ଧ ପ୍ରଭୃତି ବହୁ ଶବ୍ଦ ଆହରଣ କରି ନିଜ ରଚନାବଳୀରେ ବ୍ୟବହାର କରିଛନ୍ତି । ପଞ୍ଚସଖା ସାହିତ୍ୟର ଶୂନ୍ୟବାଦ ଓ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱର ପ୍ରତିଫଳନ ତାହାଙ୍କ ଭୀମଭୋଇଙ୍କ ରଚନାମାନଙ୍କରେ ଦୃଷ୍ଟ ହୁଏ । ପୁଣି ଅଚ୍ୟୁତାନନ୍ଦଦାସଙ୍କ ଆଗତଭବିଷ୍ୟ ମାଳିକା ଶୈଳୀରେ ସେ 'ସ୍ତୁତିଚିନ୍ତାମଣି' କାବ୍ୟରେ ଆଗତ ଭବିଷ୍ୟତ ବର୍ଣ୍ଣନା କରିଛନ୍ତି । ଅଚ୍ୟୁତାନନ୍ଦଙ୍କ ମାଳିକାର ଗୋହିରାଟିକିରି ଯୁଦ୍ଧ ଓ ଅନନ୍ତକେଶରୀ ରାଜାଙ୍କ କଥା ମଧ୍ୟ ସେ ଉଲ୍ଲେଖ କରିଛନ୍ତି । ଏଥିରୁ ଅନୁମିତ ହୁଏ ଯେ ପଞ୍ଚସଖା ସାହିତ୍ୟ ସହିତ ସେ ଉତ୍ତମଭାବରେ ପରିଚିତ ଥିଲେ । ବଲାଙ୍ଗିରବାସୀ ଚୈତନ୍ୟ ଦାସଙ୍କ ରଚିତ ବିଷ୍ଣୁଗର୍ଭ ପୁରାଣରେ

ବିଷ୍ଣୁଗର୍ଭ ଗ୍ରନ୍ଥରେ ସେ ମହିମାଗର୍ଭର ପରିକଳ୍ପନା କରିଛନ୍ତି । ତେଣୁ ଏହି ଗ୍ରନ୍ଥ ସହିତ ସେ ସୁପରିଚିତ ଥିବା ଅନୁମିତ ହୁଏ ।

ଭୀମଭୋଇ ତାଙ୍କ ଗ୍ରନ୍ଥମାନଙ୍କରେ ନାଗାନ୍ତୀ, ଯୋଗାନ୍ତୀ ଓ ସିଦ୍ଧାନ୍ତୀମାନଙ୍କ ବିଷୟ ଉଲ୍ଲେଖ କରିଛନ୍ତି । ନାଗାନ୍ତୀ କହିଲେ ମହାଯାନ ବୌଦ୍ଧଧର୍ମର ନାଗାର୍ଜୁନ ପ୍ରବର୍ତ୍ତିତ ମାଧ୍ୟମିକ ଦର୍ଶନର ଅନୁଯାୟୀମାନଙ୍କୁ ବୁଝାଏ । ସମ୍ବଲପୁର ଜିଲ୍ଲାର ନୃସିଂହନାଥଠାରେ ନାଗାର୍ଜୁନଙ୍କର ବିହାର ଥିଲା ଏବଂ ସେ ଅଞ୍ଚଳରେ ତାଙ୍କର ମତବାଦ ପ୍ରଚଳିତ ହୋଇଥିଲା । ଯୋଗାନ୍ତୀ କହିଲେ ବୌଦ୍ଧ ବିଜ୍ଞାନବାଦୀ ଯୋଗାଚାରମାନଙ୍କୁ ବୁଝାଉଥିଲା । ସିଦ୍ଧାନ୍ତୀ କହିଲେ ବୌଦ୍ଧ ସହଜଯାନର ସିଦ୍ଧାଚାର୍ଯ୍ୟମାନଙ୍କୁ ବୁଝାଉଥିଲା ।

ସମ୍ବଲପୁର ଅଞ୍ଚଳକୁ ଉଡ୍‌ଡ଼ିୟାନ ବୋଲି କୁହାଯାଉଥିଲା ଏବଂ ବୌଦ୍ଧ ବଜ୍ରଯାନର ପ୍ରବକ୍ତା ଇନ୍ଦ୍ରଭୂତି ସେ ଅଞ୍ଚଳର ରାଜା ଥିଲେ । ଇନ୍ଦ୍ରଭୂତିଙ୍କ ଭଉଣୀ ଲକ୍ଷ୍ମୀଙ୍କର ବୌଦ୍ଧ ସହଜଯାନର ଆଚାର୍ଯ୍ୟ ଥିଲେ । ଭୀମଭୋଇ ଗୋଟିଏ ସ୍ଥଳରେ ପ୍ରବୃଦ୍ଧଗୁରୁ ମହିମା ସ୍ୱାମୀଙ୍କୁ ସହଜାନନ୍ଦ ଭାବେ ବର୍ଣ୍ଣନା କରିଛନ୍ତି । ଏଥିରୁ ଅନୁମିତ ହୁଏ ଯେ ଭୀମଭୋଇ ବୌଦ୍ଧ ନାଗାନ୍ତୀ, ଯୋଗାନ୍ତୀ ଓ ସିଦ୍ଧାନ୍ତୀମାନଙ୍କ ମତବାଦ ସହିତ ସୁପରିଚିତ ।

ଅଦ୍ୱୈତବାଦର ବେଦାନ୍ତ ସମ୍ବନ୍ଧରେ ମଧ୍ୟ ତାଙ୍କର ସୁସ୍ପଷ୍ଟ ଧାରଣା ଥିଲା । କାରଣ ସେ ବେଦାନ୍ତୀମାନଙ୍କ ବିଷୟ ବାରମ୍ବାର ଉଲ୍ଲେଖ କରିଅଛନ୍ତି । ଭୀମଭୋଇ ଗୀତାର "ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ" ଏବଂ "ଜାତସ୍ୟହି ଧ୍ରୁବୋ ମୃତ୍ୟୁ ଧ୍ରୁବଂ ଜନ୍ମ ମୃତସ୍ୟ ଚ" ଶ୍ଳୋକଦ୍ୱୟର ଆକ୍ଷରିକ ଅନୁବାଦ ତାଙ୍କ ରଚନାରେ ପ୍ରକାଶ କରିଅଛନ୍ତି । ସେ ମଧ୍ୟ ସଂସ୍କୃତ ସାମାନ୍ୟ ଭାବରେ ଜାଣିଥିଲେ ଏବଂ ବ୍ରହ୍ମନିରୂପଣ ଗୀତାରେ କେତେକ ସ୍ଥଳରେ ସ୍ୱରଚିତ ଶ୍ଳୋକ ସଂଯୋଜିତ କରିଅଛନ୍ତି । ଏଣୁ ସେ ଶ୍ରୀମଦ୍‌ଭଗବଦ୍ଗୀତା ପାଠକରିଥିବା ଅନୁମିତ ହୁଏ । ଉପନିଷଦର 'ଅପାଣିପାଦ' ଶ୍ଳୋକକୁ ସେ ଯେପରି ପୁଙ୍ଖାନୁପୁଙ୍ଖ ଭାବରେ ବ୍ୟାଖ୍ୟା କରିଛନ୍ତି ସେଥିରୁ ଜଣାଯାଏ ଯେ, ସେ କେତେକ ଉପନିଷଦ ପାଠ କରିଥିବେ । ଭୀମଭୋଇ ତାହାଙ୍କ ଗ୍ରନ୍ଥମାନଙ୍କରେ ପାତଞ୍ଜଳ ଅଷ୍ଟାଙ୍ଗଯୋଗ ଏବଂ ତାନ୍ତ୍ରିକ ହଠ ଯୋଗ ସମ୍ବନ୍ଧରେ ବିସ୍ତୃତ ବର୍ଣ୍ଣନା ପ୍ରଦାନ କରିଛନ୍ତି । ତାଙ୍କର ସୃଷ୍ଟିତତ୍ତ୍ୱ ବର୍ଣ୍ଣନାରୁ ସାଂଖ୍ୟ ଦର୍ଶନ ସମ୍ବନ୍ଧରେ ସମ୍ୟକ୍ ଧାରଣା ଥିବା ଜଣାଯାଏ । ଏଣୁ ପ୍ରାଚୀନ ଭାରତର ମୁଖ୍ୟ ଦର୍ଶନଶାସ୍ତ୍ରମାନଙ୍କରେ ତାଙ୍କର ସମ୍ୟକ୍ ଧାରଣା ଥିବା ଜଣାଯାଏ । ଭୀମଭୋଇଙ୍କର ଆଠଗୋଟି ବଙ୍ଗଳା ଭଜନ ପ୍ରକାଶିତ ହୋଇଛି । ସେଗୁଡ଼ିକ ବଙ୍ଗବାସୀ ମହିମା ଧର୍ମାବଲମ୍ବୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଏଥିରୁ ଜଣାଯାଏ ଯେ ତାଙ୍କର ବଙ୍ଗଳା ଭାଷାରେ ମଧ୍ୟ ଜ୍ଞାନ ଥିଲା ।

କେତେକ ମତ ପ୍ରକାଶ କରନ୍ତି ଯେ ଭୀମଭୋଇ ନିରକ୍ଷର ଥିଲେ । ସେଥିପାଇଁ ତାଙ୍କ ରଚିତ ସ୍ତୁତି, ଚଉତିଶା ଓ ଭଜନ ସମୂହକୁ ଲେଖିବା ପାଇଁ ବ୍ରାହ୍ମଣ ଲିପିକାର ନିଯୁକ୍ତ ହୋଇଥିଲେ । କିନ୍ତୁ ତାଙ୍କର କେତେକ ଉକ୍ତିରୁ ଜଣାଯାଏ ଯେ ସେ ନିରକ୍ଷର ନଥିଲେ ।

"ଆହୁରି ରହିଲା ବର୍ଣ୍ଣି ନ ସରିଲା ସଂସାର ବିଷୟ କଥା ।
ଲେଖନ ପତରେ ଧରି ନିରନ୍ତରେ କେତେ ମୁଁ କରିବ ପୋଥା ॥"

ନିର୍ବେଦସାଧନ ଗ୍ରନ୍ଥରେ ସେ ଉଲ୍ଲେଖ କରିଛନ୍ତି—

"କରୁଣା କଲେ ଭଗବାନ । ଲେଖିଲି ନିର୍ବେଦ ସାଧନ ॥"
"ତରତର ହୋଇ ମୁଁ ଗାଉଅଛୁ ପଦ, ତାକୁ ନାହିଁ ଆଗପଛ ବେଦ କି ନିର୍ବେଦ
ଗୁଣି ତ୍ରୈଲୋକ୍ୟ କରତା, ତାଳପତ୍ରେ ଲେଖୁଅଛୁ ବୁଝିବ ବାରତା ॥"
"ଲଘୁ ଗୁଣ ସେତେ ଜାଣୁଥିବ ତ ଆପଣ
ଲେଖି ଲେଖି ଶ୍ରୀହସ୍ତରେ କରୁଛ ଜଣାଣ ।"

ଏହିସବୁ ଉକ୍ତିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ ଭୀମଭୋଇ ଅନ୍ଧ ନଥିଲେ କିମ୍ବା ନିରକ୍ଷର ନଥିଲେ । ଓଡ଼ିଆ ଭାଷାରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । ତାଙ୍କ କବିତା ସମୂହର ଭାଷା ଯେପରି ସରଳ ସେହିପରି ସରସ, ହୃଦୟଗ୍ରାହୀ ଏବଂ ଭାବଗର୍ଭିତ ।

ଭୀମଭୋଇଙ୍କର ଭଜନମାଳା ଓ ଚଉତିଶାମାନଙ୍କରୁ ତାଙ୍କର ସଂଗୀତ ଜ୍ଞାନର ପରିଚୟ ମିଳେ । ଭଜନ ଓ ଚଉତିଶାଗୁଡ଼ିକ ବିଭିନ୍ନ ରାଗରାଗିଣୀରେ ରଚିତ ହୋଇଅଛି । ସମ୍ବଲପୁର ଅଞ୍ଚଳର ଜାଇଫୁଲ, ରସ ରା ଋଲିଯା, ଆଲୋ ବଉଲ ଇତ୍ୟାଦି ଲୋକଗୀତ ସହିତ ସେ ସୁପରିଚିତ ଥିଲେ ।

ବାଲ୍ୟଜୀବନ—

ଭୀମଭୋଇ ଏକ ଦରିଦ୍ର କନ୍ଧ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଜନ୍ମହେବାର ଅଳ୍ପ କାଳ ପରେ ତାଙ୍କର ପିତା ଦେହତ୍ୟାଗ କରିଥିଲେ । ତେଣୁ ଜୀବିକା ନିର୍ବାହ ପାଇଁ ତାଙ୍କୁ ଅନ୍ୟର ଦୟା ଉପରେ ନିର୍ଭରକରିବାକୁ ପଡ଼ିଥିଲା । 'ସ୍ତୁତିଚିନ୍ତାମଣି' କାବ୍ୟର ୨୯ ବୋଲିରେ ସେ ନିଜର ବାଲ୍ୟ ଓ କୈଶୋର ଜୀବନର ଯେଉଁ କରୁଣ ଚିତ୍ର ପ୍ରଦାନ କରିଛନ୍ତି, ତାହା ଯେପରି ମର୍ମସ୍ପର୍ଶୀ ସେହିପରି ହୃଦୟସ୍ପର୍ଶୀ ।

"ବାଲ୍ୟତ କାଳରୁ ଜାଣିଅଛ ସ୍ୱାମୀ ଏ ମୋ ଦୁରୁଦଣ୍ଡ ଦୁଃଖ
ହୃଦପଦ୍ମେ ଚିନ୍ତା କରି ଅପ୍ରମିତ ଦଣ୍ଡେ ନାହିଁ ମୋର ସୁଖ ।

× × × ×

ସେ କଥାମାନ ଏବେ ମନେପଡ଼ିଲେ ହୃଦୟ ହେଉଛି ନାହା ।
ଦେହ ପୁଲକିତ ହୋଇ ଉତ୍କଣ୍ଠିତ ଚମକି ଉଠୁଛି ହିଆ ॥
ପିଣ୍ଡପ୍ରାଣ ବହି ସହିଥାଇ ଦୁଃଖ ସୁଖ ଯଥାଅର୍ଥ ।
ଚଉଁ ଉଣ୍ଡୁରୁ ଦିବସ ବହିଗଲା ହୋଇଲା ବରଷ ସାତ ॥
କ୍ଷୁଧା ତୃଷା କଲେ ଖାଲିଭି ବିକଳେ ଦଗଧି ହୁଥଇ କାଏ ।
ଅତି ଦୁଃଖେ ମୁହିଁ ଦିନ ବଞ୍ଚୁଅଛୁ କଷ୍ଟଗ୍ରସ୍ତ ଜୀବନ ପ୍ରାୟେ ॥"

ଏହିପରି ଭାବରେ ବାଳକ ଖ୍ରୀମସ୍ତୋଇ ଘୋର ଦୁଃଖ କଷ୍ଟ ଭିତରେ ୧୨ ବର୍ଷ ବୟସରେ ପଦାର୍ପଣ କଲେ । ବାରବର୍ଷ ବୟସରୁ ଖ୍ରୀମ ବଣଜଙ୍ଗଲରେ ଗୋରୁ ଚରାଇବା କାର୍ଯ୍ୟରେ ନିଯୁକ୍ତ ହେଲେ । ଗୋରୁ ଚରାଉଥିବା ବେଳେ ସେ କ୍ଷୁଧାତୃଷାରେ ପୀଡ଼ିତ ହୋଇ ଝରଣାର ପାଣି ପିଇ ତୃଷ୍ଣା ନିବାରଣ କରୁଥିଲେ । ବେଳେବେଳେ ସେ ଶୋକସନ୍ତାପରେ ଜର୍ଜରିତ ହୋଇ ବୃକ୍ଷ ମୂଳରେ ବସି ରୋଦନ କରୁଥିଲେ । ସନ୍ଧ୍ୟାବେଳେ ଗୋଚ୍ଚରଣରୁ ଫେରି ଆସି ଗୃହ ମାଲିକଙ୍କ ଅନୁଗ୍ରହରୁ ପେଜପାଣି ଯାହା ମିଳୁଥିଲା ତହିଁରେ କ୍ଷୁଧା ମେଣ୍ଟାଉଥିଲେ । ବେଳେବେଳେ ତାଙ୍କୁ ଗୃହ ମାଲିକଙ୍କଠାରୁ ମାଡ଼ ମଧ୍ୟ ଖାଇବାକୁ ପଡ଼ୁଥିଲା । ହେଲେ ଖ୍ରୀମ ଏଥିରେ ବିଚଳିତ ନହୋଇ ପ୍ରଭୁଙ୍କ ପାଦପଦ୍ମରେ ଲୟରଖି ସବୁ ସହିଯାଉଥିଲେ । ଭୀମସ୍ତୋଇଙ୍କର ଏହି ସମୟର ଅନୁଭୂତ ଅତ୍ୟନ୍ତ ମର୍ମସ୍ପର୍ଶୀ ଓ ହୃଦୟବିଦାରକ ।

"ଲୁହନାହିଁ ରକ୍ତ ବୋହୁଥାଇ ମୋର ଶ୍ରୀହସ୍ତେ ଦଅଇ ପୋଛି ।
କେହି ନଜାଣନ୍ତି ଶ୍ରୀଗୁରୁ ଜାଣନ୍ତି ଯେତେ କଷ୍ଟ ପାଇଅଛି ॥
ସେ ସମସ୍ତ କଥା ମନେକଲେ ଚିନ୍ତା କରଡ଼ କାଟୁଛି ପିଣ୍ଡ
ଉଠୁଅଛି କ୍ରୋଧ ହୋଇ ଗଦଗଦ ବୁକୁରେ ପଡ଼ୁଛି କାଣ୍ଡ ।
ଧନ୍ୟ ଏ ପିଣ୍ଡ ଖଣ୍ଡ ଖଣ୍ଡ ନହୋଇ ପଡ଼ିଅଛି ଯେତେ ମାଡ଼
ଗାଲିଦ୍ୱନ୍ଦ୍ୱ ପଛ ଆଡ଼କୁ ପକାଇ ହୃଦ କରିଥାଇ ଦୃଢ଼ ।"

ସେତେବେଳେ ଖ୍ରୀମସ୍ତୋଇଙ୍କର ବୟସ ଥିଲା ଚଉଦବର୍ଷ । ସେ ସମୟରେ ସେ ନିଜକୁ ଅତ୍ୟନ୍ତ ଅସହାୟ ଓ ନିଃସଙ୍ଗ ମନେକରୁଥିଲେ ଏବଂ ଏ ବିଶାଳ ସଂସାରରେ କୌଣସି କୂଳକିନାରା ନପାଇ ଅସହ୍ୟ ଦୁଃଖରେ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ୁଥିଲେ ।

"ସ୍ଥିତ ବସ୍ତି ନାହିଁ ପ୍ରତିରବ ନାହିଁ ସଙ୍ଗସାର୍ଥୀ ସଖା ନାହିଁ ।
ତଳକୁ ଶିର ଉପରକୁ ପୟର ମଧ୍ୟେ ମାରୁଛି ଭୁଲାଇ ॥
ଶୂନ୍ୟକୁ ଅନାଇ ରହିଅଛି ମୁହିଁ କପରି ଧରିଛି ଦେହି ।
କେଉଁ ଡାଳ ଧରି ପାରିହୋଇଯିବି ହାତଗୋଡ଼ ପାଉ ନାହିଁ ॥"

**ଦୀକ୍ଷା ଗ୍ରହଣ—**

ଖ୍ରୀମସ୍ତୋଇଙ୍କୁ ଯେତେବେଳେ ପନ୍ଦର ବର୍ଷ ବୟସ ସେତେବେଳେ ତାଙ୍କ ଜୀବନରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ ହୁଏ । ଗୁରବର୍ଷ ବୟସରେ ସେ ପ୍ରଭୁଙ୍କଗୁରୁ ମହିମାସ୍ୱାମୀଙ୍କୁ କୁମ୍ଭୀପଟ୍ଟ ପରିଧାନ ପୂର୍ବକ ଦିଗମ୍ବର ବେଶରେ ଗ୍ରାମେ ଗ୍ରାମେ ବୁଲି ଧର୍ମ-ପ୍ରଚାର କରୁଥିବାର ଦେଖିଥିଲେ । ମହିମାସ୍ୱାମୀଙ୍କ ତ୍ୟାଗପୂତ ଜୀବନ ତାଙ୍କୁ ଅଭିଭୂତ କରିଥିଲା । ସେହିଦିନଠାରୁ ସେ ମହିମାସ୍ୱାମୀଙ୍କ ପଦାରବିନ୍ଦରେ ନିଜକୁ ଉତ୍ସର୍ଗକରି ଦେଇଥିଲେ ଏବଂ ଇଶ୍ୱରଙ୍କ ଉପରେ ନିର୍ଭର କରି ଜୀବନର ସବୁ ଦୁଃଖକଷ୍ଟ ନୀରବରେ

ସହୁଥାଉଥିଲେ । ପନ୍ଦର ବର୍ଷ ବୟସରେ ଦିନେ ସେ ଘରେ ବିଭୁନାମ ସ୍ମରଣପୂର୍ବକ ଶୟନ କରିବାକୁ ଗଲେ । ସେଦିନ କାର୍ତ୍ତିକମାସ ଶୁକ୍ଳ ଦଶମୀ ତିଥି ହୋଇଥାଏ । ସେଦିନ ରାତି ଦଶଘଡ଼ି ସମୟରେ ମହିମାସ୍ୱାମୀ ନିଜର ଆଦିଶିଷ୍ୟ ଗୋବିନ୍ଦ ଦାସଙ୍କୁ ସଙ୍ଗରେ ଧରି ଭୀମଭୋଇଙ୍କ ଗୃହରେ ପହଞ୍ଚିଲେ ଏବଂ ତାଙ୍କୁ ଡାକିଲେ । ଭୀମଭୋଇ ନିଦରୁ ଉଠି ଦେଖିଲେ ସ୍ୱୟଂ ପ୍ରଭୁଙ୍କଗୁରୁ ମହିମାସ୍ୱାମୀ ତାଙ୍କ ସମ୍ମୁଖରେ ଉପସ୍ଥିତ । ଭୀମ ଭକ୍ତିପୂର୍ଣ୍ଣ ହୃଦୟରେ ତାଙ୍କର ଚରଣବନ୍ଦନାକଲେ । ମହିମାସ୍ୱାମୀ ଭୀମଙ୍କ ମସ୍ତକରେ କର ସଞ୍ଚାଳନ ପୂର୍ବକ ତାଙ୍କୁ ଆଶୀର୍ବାଦ କଲେ ଏବଂ ପରଦିନ ପ୍ରାତଃକାଳରେ ତାହାଙ୍କୁ ସତ୍ୟମହିମା ଧର୍ମରେ ଦୀକ୍ଷିତ କଲେ । ଭୀମଭୋଇ ହେଲେ ମହିମାସ୍ୱାମୀଙ୍କର ପ୍ରଥମ ଗୃହୀଭକ୍ତ । ଦୀକ୍ଷାଗ୍ରହଣ ପରେ ଭୀମଙ୍କର ଜୀବନରେ ଏକ ନୂତନ ଅଧ୍ୟାୟର ଶୁଭାରମ୍ଭ ହେଲା । ଜୀବନର ସୁଖଦୁଃଖ, ହାନିଲାଭ ଓ ଭଲମନ୍ଦ ସବୁ ପରଂବ୍ରହ୍ମ ଅଲେଖସ୍ୱାମୀଙ୍କ ଶ୍ରୀଚରଣରେ ସମର୍ପଣ କରିଦେଇ ତାଙ୍କ ପାଦପଦ୍ମ ଦ୍ୱୟର ଧ୍ୟାନ, ଲୟ ଓ ଆରାଧନାରେ କାଳ ଅତିବାହିତ କରିବାକୁ ଲାଗିଲେ । ଏଣିକି ତାଙ୍କ ଲକ୍ଷ୍ୟହୀନ ଜୀବନର ଏକମାତ୍ର ଲକ୍ଷ୍ୟହେଲା ମହିମାସ୍ୱାମୀଙ୍କର ମହିମାଗାନ ଓ ସତ୍ୟମହିମା ଧର୍ମର ପ୍ରଚାର ଓ ପ୍ରସାର । ହରିପ୍ରେମର ଜାହ୍ନବୀ ପ୍ରବାହରେ ସେ ନିଜକୁ ଭସାଇଦେଲେ । ପରଂବ୍ରହ୍ମ ଅଲେଖ-ସ୍ୱାମୀଙ୍କ ସ୍ମରଣ, ଭଜନ, ନାମକୀର୍ତ୍ତନ, ମନନ ଓ ନିଦିଧ୍ୟାସନ ହେଲା ତାଙ୍କ ଜୀବନର ଏକମାତ୍ର ବ୍ରତ ।

"ଅନନ୍ୟ ନାହିଁ ଚିତ୍ତ ନାମବ୍ରହ୍ମରତ ଦର୍ଶନମାତ୍ର କରିଛୁ ।
ସ୍ୱାମୀ ରଖ ସ୍ୱାମୀ ରଖ ବୋଲି ମୁଁ ଯେ ଦିବାନିଶି ଡାକୁଅଛୁ ।।
ପବନକୁ ବାନ୍ଧି ପ୍ରକୃତିକୁ ଛିନ୍ଦି ଅନୁକ୍ଷଣେ ଧ୍ୟାନଯୋଗ ।
ଅନାଥର ନାଥ କରୁଣାକଲେ ମୁଁ ପାଇବିଟି ସୁଖ ଭୋଗ ।।"

ଭୀମଭୋଇ ମହିମାଧର୍ମର ନିୟମ ଅନୁଯାୟୀ ଗୈରିକ ବସ୍ତ୍ର ପରିଧାନ କରୁଥିଲେ ଏବଂ ପାଦରେ ପାଦୁକା ବ୍ୟବହାର କରୁନଥିଲେ । ସେ ସାଧାରଣତଃ କାହାରିକୁ ସ୍ପର୍ଶ କରୁନଥିଲେ । କୌଣସି ସ୍ଥାନକୁ ଯିବାକୁ ପଡ଼ିଲେ ସେ ଯାନବାହନର ଆଶ୍ରୟ ଗ୍ରହଣ ନକରି ଖାଲି ପାଦରେ ଚାଲିଚାଲି ଯାଉଥିଲେ । ସେ ମହିମାଧର୍ମର ସାଧୁସନ୍ନ୍ୟାସୀମାନଙ୍କୁ ଧର୍ମଦାଣ୍ଡରେ ଭିକ୍ଷା ଦେଇ ସେମାନଙ୍କର ଆଶୀର୍ବାଦ ଗ୍ରହଣ କରୁଥିଲେ । ସ୍ୱୟଂ ମହିମା-ସ୍ୱାମୀ ଭୀମଙ୍କ ହସ୍ତରୁ ଭିକ୍ଷା ଗ୍ରହଣ କରିଥିଲେ ।

**କବିତ୍ୱ—**

ଦୀକ୍ଷା ଗ୍ରହଣ ପରେ ଭୀମଭୋଇ କବିତା ରଚନା କରିବାକୁ ଆରମ୍ଭକଲେ । ଭୀମଭୋଇ ପ୍ରତିଭାବାନ୍ ବ୍ୟକ୍ତି ଥିଲେ । ପର୍ବତ କନ୍ଦରରୁ ପାଣି ଝରିବା ପରି ତାଙ୍କ ହୃଦୟକନ୍ଦରରୁ କବିତା କ୍ଷରିତ ହେଉଥିଲା । ସେଥିପାଇଁ ତାଙ୍କୁ କୌଣସି ଶ୍ରମ ବା କ୍ଳେଶ କରିବାକୁ

ପଢ଼ୁନଥିଲେ । ଭୀମଭୋଇ କହୁଅଛନ୍ତି ଯେ ପୂର୍ବଜନ୍ମର ସଂସ୍କାର ଫଳରୁ ପ୍ରଭୁ ମହିମାସ୍ୱାମୀଙ୍କ ଅପାର କରୁଣାରୁ ସେ କବିତ୍ୱ ଶକ୍ତି ଲାଭ କରିଥିଲେ ।

"ଶ୍ରୀଗୁରୁ କୃପାରୁ ମୋର କବିପଣ, ବାଳକ ବୟସେ ମୋର ନାହିଁ ବୁଦ୍ଧି ଜ୍ଞାନ ।
ଗୁରୁଙ୍କ ଅଙ୍କରେ ମୁଁ କରିଛୁ କବିକୃତ, ମୁହିଁ କିସ କହିବାକୁ ଯେ ସାମରଥ ॥

ଏଥିରୁ ଅନୁମିତ ହୁଏ ଯେ ମହିମାଧର୍ମର ଉଚ୍ଚ ଆଦର୍ଶ ଓ ମହିମାସ୍ୱାମୀଙ୍କର ତ୍ୟାଗପୂତ ଜୀବନ ଭୀମଭୋଇଙ୍କର ଅନ୍ତର୍ନିହିତ କବିତ୍ୱ ଶକ୍ତିର ଉଦ୍‌ବୋଧନରେ ପ୍ରେରଣା ଯୋଗାଇ ଥିଲେ । ଭୀମଭୋଇ କୈଶୋର କାଳରେ ଡାଲଖାଇ, ବଉଲ ଲୋ, ଜାଇଫୁଲ ଓ ରସ ଯା ସ୍ୱଲଯା ଆଦି ପ୍ରଚଳିତ ଲୋକଗୀତ ଭଙ୍ଗୀରେ କେତେକ କବିତା ରଚନା କରିଥିଲେ । ଭୀମଭୋଇ ଯଶଃ ବା ଖ୍ୟାତି ପାଇଁ କବିତା ରଚନା କରିନଥିଲେ । ଜଗତର କଲ୍ୟାଣ ସାଧନ ଥିଲା ତାଙ୍କ କବିତାର ରଚନାର ମୂଳ ଲକ୍ଷ୍ୟ ।

**ଯୋଗସାଧନା—**

ପରିପୂର୍ଣ୍ଣ ଆତ୍ମସମର୍ପଣ, ଭଜନ, କୀର୍ତ୍ତନ, ନାମଗାନ ଓ ଐକାନ୍ତିକ ଭକ୍ତିସଙ୍ଗେ ସଦ୍‌ଗୁଣ ଯୋଗସାଧନା ମଧ୍ୟ ଭଗବଦ୍‌ ପ୍ରାପ୍ତିର ଏକ ଉପାୟ ବୋଲି ଭୀମଭୋଇ ତାଙ୍କ ଗ୍ରନ୍ଥ-ମାନଙ୍କରେ ବହୁସ୍ଥାନରେ ଉଲ୍ଲେଖ କରିଅଛନ୍ତି ।

"ପବନକୁ ବାନ୍ଧି ପ୍ରକୃତିକୁ ଛାଡ଼ି ଅନୁକ୍ଷଣେ ଧ୍ୟାନ ଯୋଗ ।
ଅନାଥର ନାଥ କରୁଣା କଲେ ମୁଁ ପାଇବଇ ସୁଖ ଭୋଗ ।"

ଭୀମଭୋଇ ତାହାଙ୍କର ବିବିଧ ରଚନାମାନଙ୍କରେ ଅଷ୍ଟାଙ୍ଗଯୋଗ ଓ ହଠଯୋଗର ବିସ୍ତୃତ ବିବରଣୀମାନ ପ୍ରଦାନ କରିଅଛନ୍ତି । ସେଥିରୁ ଅନୁମିତ ହୁଏ ଯେ ସେ ନିଜେ ଯୋଗସାଧନା କରି ସିଦ୍ଧି ଲାଭ କରିଥିଲେ । ଯୋଗ ମାର୍ଗରେ ଥାଇ ଗାର୍ହସ୍ଥ୍ୟ ବରଣ କରି ନେଇଥିବାରୁ ସେ ଏକ ଚଉତିଶାରେ ଗଭୀର ଖେଦ ପ୍ରକାଶ କରିଛନ୍ତି ।

"ଯୋଗ ମାର୍ଗ ଧରି ଯୋଗୀ ପଣେ ଥାଇ ଯୁଗଳକୁ ଇଚ୍ଛା ହୋଇଲା ।
ଜଗତ ପତିତ ସଂସାର ଭିତରେ ତହିଁ ମୋ ମନ ରହିଲା ।"

**ଧର୍ମପ୍ରଚାର—**

ଭୀମଭୋଇ ମହିମାଧର୍ମର ପ୍ରଚାରକୁ ନିଜ ଜୀବନର ପରମ ଲକ୍ଷ୍ୟ ରୂପେ ଗ୍ରହଣ କରି ନେଇଥିଲେ । କବିତା ଥିଲା ତାଙ୍କ ଧର୍ମପ୍ରଚାରର ପ୍ରଧାନ ମାଧ୍ୟମ । ଅସଂଖ୍ୟ ଭଜନ, ସ୍ତୁତି, ଜଣାଣ, ଚଉତିଶା ଓ କାବ୍ୟ କବିତା ରଚନା କରି ସେ ଲୋକରେ ମହିମାଧର୍ମର ବାଣୀ ଓ ସନ୍ଦେଶକୁ ପ୍ରଚାର କରୁଥିଲେ । ସେ ତାଙ୍କର ଭଜନ ଓ ଜଣାଣଗୁଡ଼ିକୁ ମହିମା ସ୍ୱାମୀଙ୍କ ନିକଟକୁ ପଠାଇ ଦେଉଥିଲେ । ପ୍ରଥମେ ମହିମାସ୍ୱାମୀଙ୍କ ସମ୍ମୁଖରେ ସେଗୁଡ଼ିକ ଗାନ-କରାଯାଉଥିଲା । ତତ୍‌ପରେ ମହିମାଧର୍ମର ସାଧୁସନ୍ଥମାନେ ସେଗୁଡ଼ିକୁ ଗ୍ରାମ ଗ୍ରାମାନ୍ତରକୁ

ନେଇ ଲୋକମାନଙ୍କୁ ଶୁଣାଉଥିଲେ । ଏ ବିଷୟ ଭୀମଭୋଇ ନିଜେ ମହିମାସ୍ୱାମୀଙ୍କ ତିରୋଧାନ ପରେ ରଚିତ ଏକ ଚଉତିଶାରେ ଉଲ୍ଲେଖ କରିଅଛନ୍ତି । ମହିମାସ୍ୱାମୀଙ୍କ ନିର୍ଦ୍ଦେଶରେ ଭୀମଭୋଇ ପ୍ରଭୁଙ୍କର ଖେଳାଲୀଳାରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ ନକରି ଗୃହରେ ରହି କବିତା ମାଧ୍ୟମରେ ମହିମାଧର୍ମର ପ୍ରଚାର ଓ ପ୍ରସାରରେ ବ୍ରତୀ ହୋଇଥିଲେ । ଏହି କଥାକୁ ଲକ୍ଷ୍ୟ କରି କବି ତାହାଙ୍କର ସ୍ତୁତିଚିନ୍ତାମଣି କାବ୍ୟରେ କହିଛନ୍ତି —

"କବି ପଦସତ୍ୱ ମୋର ଶିରେ ବୁହାଇ ଦେଲ ।
ଅତଥି ରୂପେ ସ୍ୱାମୀ ବ୍ରହ୍ମାଣ୍ଡରେ ବୁଲିଲ ।"

ଆଜି ଯେ ମହିମାଧର୍ମ ଉତ୍କଳ ଓ ଉତ୍କଳ ବାହାରେ ବିପୁଳ ପ୍ରସାର ଲାଭ କରିଅଛି ତାର ମୂଳରେ ଅଛି ଭୀମଭୋଇଙ୍କର ପ୍ରାଣମତାଣିଆ କବିତାବଳୀ ।

କବିତା ରଚନା କରିବା ସଙ୍ଗେ ସଙ୍ଗେ ଭୀମଭୋଇ ନିକଟବର୍ତ୍ତୀ ଗ୍ରାମଗ୍ରାମାନ୍ତରରେ ମହିମାଧର୍ମର ବାଣୀ ପ୍ରଚାର କରୁଥିଲେ । ସେ ଗ୍ରାମେ ଗ୍ରାମେ ଓ ଘରେ ଘରେ ବୁଲି ସେହିସବୁ ସ୍ଥାନର ସ୍ତ୍ରୀ, ପୁରୁଷ, ବୃଦ୍ଧ, ଯୁବକମାନଙ୍କୁ ମହିମାଧର୍ମର ସାରତତ୍ତ୍ୱ ବୁଝାଇ ଏହାକୁ ମୁକ୍ତିର ଏକମାତ୍ର ଉପାୟ ରୂପେ ଗ୍ରହଣକରିନେବାକୁ ପ୍ରବର୍ତ୍ତାଇଥିଲେ । ସେ ସେମାନଙ୍କୁ ନିଜନିଜର ସୁତବନ୍ଧୁ, ଧନସମ୍ପଦ, ସୁଖଦୁଃଖ, ହାନିଲାଭ, ପାପପୁଣ୍ୟ ସବୁ ନିଷ୍କାମ ଚିତ୍ତରେ ଅଲେଖ ପରଂବ୍ରହ୍ମଙ୍କ ପଦାରବିନ୍ଦରେ ସମର୍ପଣ କରିଦେଇ ପ୍ରଭୁ ନାମ ଭଜନ କରିବାକୁ ଉପଦେଶ ଦେଉଥିଲେ । ଏହା କଲେ ବ୍ରହ୍ମପ୍ରାପ୍ତି ସୁଗମ ହେବ ବୋଲି ସେ ସେମାନଙ୍କୁ ବୁଝାଉଥିଲେ । ସେ ସେମାନଙ୍କୁ କହୁଥିଲେ ଯେ ମୁକ୍ତିପାଇଁ ଯାଗଯଜ୍ଞ, ହୋମ, ସନ୍ଧ୍ୟା, ଜପ, ତପ, ଯନ୍ତ୍ର, ମନ୍ତ୍ର, ତନ୍ତ୍ର ଓ ତୀର୍ଥବ୍ରତାଦି କ୍ଳେଶକର ପନ୍ଥାର ଆଶ୍ରୟ ଗ୍ରହଣ କରିବା ସମ୍ପୂର୍ଣ୍ଣ ନିଷ୍ପ୍ରୟୋଜନ, ଓ ଶୁଦ୍ଧ ନିର୍ମଳ ଭକ୍ତି ଓ ପରିପୂର୍ଣ୍ଣ ଆତ୍ମସମର୍ପଣ ଏଥିପାଇଁ ପ୍ରକୃଷ୍ଟ ପନ୍ଥା ।

"ମୃତ୍ପିଣ୍ଡ ଗୋଟି ମାୟା ଅଛି ଯୋଚି ସ୍ୱହୁଁ ସ୍ୱହୁଁ ଯିବ ମରି ।
ଭଜି ଯେ ପାରିବ ଜନ୍ମ ମରଣରୁ ନିସ୍ତରି ସେ ହେବ ପାରି ॥
ଭୟକୁ ତେଜିଲେ ନିର୍ଭୟ ବୁଝିଲେ ତେବେ ଅଛି ପୁଣ୍ୟ କାମ ।
ଅନ୍ତ ଡାକୁଥିବ ଅଲେଖ ମହିମା ମୁଖ ଡାକୁଥିବ ନାମ ॥"

ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ଶ୍ରେଷ୍ଠଠାରୁ ବଡ଼ ପର୍ଯ୍ୟନ୍ତ ଜାତି ବର୍ଣ୍ଣ ନିର୍ବିଶେଷରେ ପ୍ରତ୍ୟେକ ମନୁଷ୍ୟ ନିଷ୍କାମ ଚିତ୍ତରେ ଓ ଆକୁଳ ହୃଦୟରେ ଭଗବାନଙ୍କୁ ଡାକିଲେ ଏବଂ ତାଙ୍କ ଭାବନାରେ ଅହରହ ନିମଜ୍ଜିତ ହୋଇ ରହିଲେ ତାର ମୁକ୍ତି ସୁନିଶ୍ଚିତ । ଭୀମଭୋଇଙ୍କର ଆଜୀବନ ସାଧନା ଓ ଅକ୍ଳାନ୍ତ ଉଦ୍ୟମ ଫଳରେ ମହିମାଧର୍ମ ଉତ୍କଳ ଓ ଉତ୍କଳ ବାହାରେ ଅତ୍ୟନ୍ତ ଜନପ୍ରିୟ ହୋଇପାରିଥିଲା ଏବଂ ସମାଜର ସବୁ ଶ୍ରେଣୀର ଲୋକ ଏହି ଧର୍ମପ୍ରତି ଆକୃଷ୍ଟ ହୋଇଥିଲେ ।

**ବିବାହ ଓ ଗାର୍ହସ୍ଥ୍ୟ—**

ମହିମାଧର୍ମରେ ସନ୍ନ୍ୟାସୀ ଓ ଗୃହସ୍ଥ ଏହି ଉଭୟ ପନ୍ଥାର ବ୍ୟବସ୍ଥା ରହିଛି । ସନ୍ନ୍ୟାସ ଅତ୍ୟନ୍ତ କଠିନ ପନ୍ଥା । ତ୍ୟାଗ, କଠୋର ଆତ୍ମସଂଯମ ଓ ବ୍ରହ୍ମଚର୍ଯ୍ୟ ଆଚରଣ ବିନା ଏହା ସମ୍ଭବପର ନୁହେଁ । ତେଣୁ ଏହା ସର୍ବସାଧାରଣଙ୍କ ପାଇଁ ପ୍ରଶସ୍ତ ନୁହେଁ । କିନ୍ତୁ ଗୃହସ୍ଥ ପନ୍ଥା ସହଜ ଓ ସୁଗମ । ସ୍ତ୍ରୀ ପୁରୁଷ, ଉଚ୍ଚ ନୀଚ ଆଚଣ୍ଡାଳବ୍ରାହ୍ମଣ ବୃତ୍ତି ନିର୍ବିଶେଷରେ ଗୃହସ୍ଥ ପନ୍ଥାରେ ଅଲେଖ ମହିମାଙ୍କୁ ଭଜନ କରିପାରିବେ । ଗୃହ ସଂସାରରେ ପୁତ୍ରଭାର୍ଯ୍ୟାଙ୍କ ମେଳରେ ବାସ କରି ମଧ୍ୟ ଏହି ପନ୍ଥାରେ ଭଗବାନ୍‌ଙ୍କୁ ପାଇପାରିବ । ଏଥିପାଇଁ ଲୋଡ଼ା କେବଳ ଅନନ୍ୟ ଭକ୍ତି, ପରିପୂର୍ଣ୍ଣ ଆତ୍ମସମର୍ପଣ ଏବଂ ନିଷ୍କାମ କର୍ମଯୋଗ ।

ସେଥିପାଇଁ ଭୀମଭୋଇ ଗୃହସ୍ଥ ପନ୍ଥାକୁ ନିଜ ଜୀବନର ଧ୍ୟେୟ ରୂପେ ବାଛି ନେଇଥିଲେ । ସେ ଥିଲେ ମହିମା ସ୍ୱାମୀଙ୍କର ସର୍ବପ୍ରଥମ ଗୃହସ୍ଥ ଭକ୍ତ । ଭୀମଭୋଇ ବିବାହ କରିଥିଲେ ଏବଂ ତାଙ୍କର ସ୍ତ୍ରୀଙ୍କର ନାମ ଥିଲା ଅନ୍ନପୂର୍ଣ୍ଣା । ସେ ଜଣେ ବ୍ରାହ୍ମଣ କନ୍ୟା ଥିଲେ । ଲୋକେ ତାଙ୍କୁ ମା ଅନ୍ନପୂର୍ଣ୍ଣା ବୋଲି ଡାକୁଥିଲେ । ଭୀମଭୋଇଙ୍କ ଆଧ୍ୟାତ୍ମ ଜୀବନର ସେ ଥିଲେ ଯଥାର୍ଥ ସହଯୋଗିନୀ । ଭୀମଭୋଇ କେବେ ବିବାହ କରିଥିଲେ ତାହା ସଠିକ ଭାବରେ କୁହାଯାଇ ପାରିବ ନାହିଁ । ତେବେ 'ସ୍ତୁତିଚିନ୍ତାମଣି' ରଚନାବେଳକୁ ସେ ବିବାହ କରି ସାରିଥିଲେ ଏବଂ ତାଙ୍କର ପୁତ୍ର ସନ୍ତାନଟିଏ ଜାତହୋଇଥିଲା । ଭୀମଭୋଇ ଏ ବିଷୟ 'ସ୍ତୁତିଚିନ୍ତାମଣି' କାବ୍ୟରେ ଉଲ୍ଲେଖ କରିଅଛନ୍ତି । ଭୀମଭୋଇଙ୍କର ପୁତ୍ରଙ୍କର ନାମ କପିଳେଶ୍ୱର ଓ କନ୍ୟାର ନାମ ଲାବଣ୍ୟବତୀ ଥିଲା । ଉଭୟ ପିତାଙ୍କର ପଦାଙ୍କ ଅନୁସରଣ କରି ଶୁଦ୍ଧପୂତ ଓ ସଂଯତ ଜୀବନଯାପନ କରିଥିଲେ । ଭୀମଭୋଇଙ୍କର ଏକାଧିକ ପତ୍ନୀ ଥିବା କଥା କୁହାଯାଏ । ଜର୍ମାନର ବିଦୁଷୀ ମହିଳା ଏ. ଏଚମାନ୍ ତାଙ୍କର ସୁପ୍ରସିଦ୍ଧ "The cult of Jagannath and Traditions of Orissa" ପୁସ୍ତକର "ମହିମାଧର୍ମ" ଶୀର୍ଷକ ପ୍ରବନ୍ଧରେ ଉଲ୍ଲେଖ କରିଅଛନ୍ତି ଯେ ତାଙ୍କର ଚାରିଜଣ ସହଯୋଗିନୀ ଥିଲେ । ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କ ସହିତ ତାଙ୍କର ସାଂସାରିକ ସମ୍ପର୍କ ଥିଲା ଏବଂ ଅନ୍ୟ ଦୁଇଜଣ ତାଙ୍କ ଆଧ୍ୟାତ୍ମ ଜୀବନର ସହଯୋଗିନୀ ମାତ୍ର ଥିଲେ । ମହିମା ସ୍ୱାମୀଙ୍କର ତିରୋଧାନ ବିଷୟବର୍ଣ୍ଣନା କରିବା ପ୍ରସଙ୍ଗରେ ଭୀମଭୋଇ ଏକ ଚଉତିଶାରେ ଏହାର କ୍ଷୀଣ ଆଭାସ ଦେଇଅଛନ୍ତି ।

"ନାଗର ପଣିଆ ବୁଦ୍ଧି ଦେଖି ମୋର ବିରାଜିଲ ଶୂନ୍ୟ ଆକାଶେ" ।

ଅନ୍ୟ ଏକ ଚଉତିଶାରେ ସେ କହିଛନ୍ତି —

"ଘରଣୀମାନଙ୍କ ସଙ୍ଗେ ଘାଣ୍ଟି ହେଲି ।

ଘୋର ବନେ ନିଶି ଅନ୍ଧାରେ ଘୁଞ୍ଚି ନ ପାରିଲି ସ୍ନେହ ନ ତେଜିଲି ।"

ପାରିବାରିକ ଜୀବନରେ ଭୀମଭୋଇ ମହିମାଧର୍ମର ନୀତିନିୟମ ଅନୁଯାୟୀ ପ୍ରତିଦିନ ପ୍ରତ୍ୟୁଷରେ ସ୍ନାନପୂର୍ବକ ପ୍ରାତଃ ଶରଣ ଦର୍ଶନ ପରେ ଗ୍ରନ୍ଥ ରଚନା, ଧର୍ମାଲୋଚନା, ବ୍ରହ୍ମ ନାମ ସ୍ମରଣ, ଭଜନ ଓ କୀର୍ତ୍ତନାଦିରେ ସମସ୍ତ ଅତିବାହିତ କରୁଥିଲେ । ସାୟଂକାଳର

ଶରଣ ଦର୍ଶନ ପରେ ଶୟନ କରିବା ପର୍ଯ୍ୟନ୍ତ ପୂର୍ବୋକ୍ତ କାର୍ଯ୍ୟକ୍ରମ ଅନୁସୃତ ହେଉଥିଲା । ମହିମାଧର୍ମର ନିୟମ ଅନୁଯାୟୀ ସେ ଗୃହିଭୋଜନ କରୁନଥିଲେ । ଏହି ସମୟରେ ତାଙ୍କର ଆର୍ଥିକ ଅବସ୍ଥାରେ ମଧ୍ୟ ପରିବର୍ତ୍ତନ ସାଧିତ ହୋଇଥିଲା । ଉତ୍କଟ ଦାରିଦ୍ର୍ୟରୁ ମୁକ୍ତିଲାଭ କରି ସେ ସ୍ୱଚ୍ଛଳ ଜୀବନଯାପନ କରିବାକୁ ସମର୍ଥ ହୋଇଥିଲେ । ଏ ବିଷୟ ସେ ତାଙ୍କର "ସ୍ତୁତିଚନ୍ତାମଣି କାବ୍ୟରେ ଅତି ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ।

ଶ୍ରୀମଷ୍ଟେଭି ସତ୍ୟ ମହିମାଧର୍ମର ଜଣେ ନିଷ୍ଠାପର ଭକ୍ତ ଥିଲେ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସତ୍ୟ, ମୈତ୍ରୀ ଓ ଅହିଂସା ନୀତି ଅନୁସରଣ ପୂର୍ବକ ନିଜରସ ବସ୍ତୁ ମହିମାସ୍ୱାମୀଙ୍କ ପଦାରବିନ୍ଦରେ ଅର୍ପଣ କରି ନିଷ୍କାମ ଚିତ୍ତରେ କାଳଯାପନ କରୁଥିଲେ । ତାଙ୍କର ଚରିତ୍ର ଶୁଦ୍ଧ, ନିର୍ମଳ ଓ ନିଷ୍କଳଙ୍କ ଥିଲା । ପାରିବାରିକ ଜୀବନରେ ବ୍ରହ୍ମଚର୍ଯ୍ୟର ଉପଯୋଗିତା ଉପରେ ସେ ବିଶେଷ ଗୁରୁତ୍ୱ ଆରୋପ କରୁଥିଲେ । ସେ ବରାବର କହୁଥିଲେ ଯେ ପତି ପତ୍ନୀ ଋତୁକାଳ ବ୍ୟତୀତ ଅନ୍ୟ ସମୟରେ ଭାଇଭଉଣୀ ଭଳି ଜୀବନ ନିର୍ବାହ କରିବା ଉଚିତ । ଗୃହସ୍ଥାଶ୍ରମକୁ ବରଣ କରି ନେଇଥିଲେ ମଧ୍ୟ ସଂସାରୀ ହୋଇଥିବା ହେତୁ ତାଙ୍କର ବିବେକ ତାଙ୍କୁ ବେଳେ ବେଳେ ଦଂଶନ କରୁଥିଲା ଏବଂ ଘୋର ଆତ୍ମଦ୍ୱନ୍ଦ୍ୱରେ ଛଟପଟ ହୋଇ ସେ ତାଙ୍କର ଅପରାଧ କ୍ଷମା କରିବା ନିମିତ୍ତ ପରମ କାରୁଣିକ ଗୁରୁ ମହିମାସ୍ୱାମୀଙ୍କ ନିକଟରେ କାତର ନିବେଦନ ଜଣାଉଥିଲେ ।

"ଫୁଲପଣ କରି ଫଳାକୁ ଲୋଡ଼ିଲି ଫେଡ଼ିକରି ମୁଖେ କହୁଛୁ,
ଫଳ ସୁରତରେ ବାଉଳି ହୋଇ ମୁଁ ଗୁରୁଦ୍ୱାରେ ଦୋଷ କରିଛୁ,
ସ୍ୱାମୀ ହେ ଫୁଟି ଯାଉଅଛୁ ନୟନ
ପୁଷ୍ପକ ବିମାନ କରାଇ ତିଆଣ ବସି ବିଜେ କର ବଦନ ।"

ଶ୍ରୀମଷ୍ଟେଭି ଅତ୍ୟନ୍ତ ଉଦାର, ଦୟାଳୁ, କ୍ଷମାଶୀଳ ଏବଂ ଅତିଥିବତ୍ସଳ ଥିଲେ । ତାଙ୍କର ଭକ୍ତି, ଆଧ୍ୟାତ୍ମିକତା, ନିର୍ମଳ ନିଷ୍କଳଙ୍କ ଚରିତ୍ରବଳ ଓ ଅସାଧାରଣ କବିତ୍ୱ ହେତୁ ଶ୍ରୀମଷ୍ଟେଭି ଅତ୍ୟନ୍ତ ଜନପ୍ରିୟ ହୋଇଥିଲେ । ବହୁଲୋକ ତାଙ୍କ ଗୃହରେ ସମବେତ ହୋଇ ତାଙ୍କଠାରୁ ମହିମାଧର୍ମର ବାଣୀ ଶ୍ରବଣ କରୁଥିଲେ । ତାଙ୍କର ଭକ୍ତିମତ୍ତା ଓ ନିଷ୍କାମ ଧର୍ମପରାୟଣତାର ପରିଚୟ ପାଇ ଦୂରଦୂରାନ୍ତରରୁ ବହୁ ଲୋକ ତାଙ୍କୁ ସାକ୍ଷାତ କରିବାକୁ ଆସୁଥିଲେ । ବହୁଲୋକ ମଧ୍ୟ ତାଙ୍କୁ ନିଜର ଗୁରୁରୂପେ ଗ୍ରହଣ କରି ତାଙ୍କଠାରୁ ମହିମାଧର୍ମର ଦୀକ୍ଷା ନେଉଥିଲେ । ସେତେବେଳକୁ ଶ୍ରୀମଷ୍ଟେଭି ଗୁରୁପଦରେ ପ୍ରତିଷ୍ଠିତ ହୋଇ ସାରିଥିଲେ ।

**ନଅଙ୍କ ଦୁର୍ଭିକ୍ଷ—**

୧୮୬୬ ମସିହାରେ ଓଡ଼ିଶାରେ ଏକ ଭୀଷଣ ଦୁର୍ଭିକ୍ଷ ଦେଖା ଦେଇଥିଲା । ପୁରୀ ରାଜାଙ୍କ ନଅ ଅଙ୍କରେ ଏହା ସଂଘଟିତ ହୋଇଥିବାରୁ ଏହାକୁ ନଅଙ୍କ ଦୁର୍ଭିକ୍ଷ ବୋଲି କହନ୍ତି । ଏହି ଦୁର୍ଭିକ୍ଷରେ ଓଡ଼ିଶାର ବହୁଲୋକ ପ୍ରାଣ ହରାଇଥିଲେ ଏବଂ ବହୁଲୋକ ଘରଦ୍ୱାର ଛାଡ଼ି ଛିନ୍ନବିଚ୍ଛିନ୍ନ ହୋଇ ଯାଇଥିଲେ । ଏହା ଓଡ଼ିଶାର ଆର୍ଥିକ ଓ

ସାମାଜିକ ସ୍ତମ୍ଭକୁ ଗଭୀର ଭାବରେ ଦୋହଲାଇ ଦେଇଥିଲା । ମହାତ୍ମା ଭୀମଭୋଇଙ୍କର କରୁଣ ହୃଦୟ ଏଥିରେ ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲା । 'ଅଷ୍ଟକବିହାଗ' ଗୀତାରେ ସେ ଦୁର୍ଭିକ୍ଷ କବଳରୁ ବଞ୍ଚାଇବାପାଇଁ, ଅନ୍ନବସ୍ତ୍ର ଦାନ କରିବା ପାଇଁ ଲୋକମାନଙ୍କୁ କାତର ନିବେଦନ ଜଣାଇଛନ୍ତି । ତାଙ୍କର କେତେକ ଚଉତିଶାରେ ସେ ଏହି ପ୍ରଳୟଙ୍କରୀ ଦୁର୍ଭିକ୍ଷର କରାଳ ଚିତ୍ର ଅଙ୍କନ କରିଅଛନ୍ତି ।

"ଧରଣୀ ଆକାଶରେ କାହିଁ ନା ମାର । ଧର୍ମବନ୍ତ ପୁରୁଷ ବିଚାର କର ।
ଦଗ୍ଧ ହୋଇଲଣି ମେଦନୀ ରହା । ଦୟାକର ଅନନ୍ତ ହେଉ ବରଷା ।।
ଅଣିଗଲାଣି ପିଣ୍ଡ ବ୍ରହ୍ମାଣ୍ଡ ଆଦି । ଅସ୍ଥିକରି କରତା ରଖ ସମାଧି ହେ ।
ତପତ ଉଠିଲାଣି ତିନି ତ୍ରୈଲୋକ୍ୟ । ତାହିକରି ଆକୁଳ ହେଲେଣି ଲୋକ ହେ ।
ଥନନ ଉଠିଲାଣି ଚଉଦିଗ । ଅନାଦି ଗୁରୁଙ୍କର ଜଳ ସଯୋଗ ହେ ।"

ଏହି ବର୍ଣ୍ଣନା ସହିତ ଫକୀରମୋହନଙ୍କ ଆତ୍ମଜୀବନୀ ବର୍ଣ୍ଣିତ ନଅଙ୍କ ଦୁର୍ଭିକ୍ଷର ଭୟାବହ ଚିତ୍ରର ଅପୂର୍ବ ସାମଞ୍ଜସ୍ୟ ଲକ୍ଷିତ ହୁଏ । ଭୀମଭୋଇ ଓ ଫକୀରମୋହନଙ୍କ ବ୍ୟତୀତ ଅନ୍ୟ କେହି ଏହି ଭୟାବହ ଦୁର୍ଭିକ୍ଷର ପ୍ରତ୍ୟକ୍ଷଦର୍ଶୀ ବିବରଣ ଦେଇନାହାନ୍ତି ।

**ମହିମା ସ୍ୱାମୀଙ୍କ ତିରୋଧାନ—**

୧୮୭୬ ଖ୍ରୀଷ୍ଟାବ୍ଦରେ ମହିମାସ୍ୱାମୀ ଇହଧାମ ତ୍ୟାଗକରି ମହାନିତ୍ୟଧାମକୁ ପ୍ରସ୍ଥାନ କଲେ । ଭୀମଭୋଇ ମହିମାସ୍ୱାମୀଙ୍କର ଚରଣ କମଳରେ ତାଙ୍କ ଜୀବନର ସର୍ବ ଅର୍ପଣ କରିଥିଲେ । ମହିମାସ୍ୱାମୀ ଥିଲେ ତାଙ୍କର ପ୍ରାଣଠାରୁ ଅଧିକ ପ୍ରିୟ । ମହିମାସ୍ୱାମୀଙ୍କର ତିରୋଧାନ ତାଙ୍କ ହୃଦୟକୁ ଦାରୁଣ ଆଘାତ ଦେଲା । ଦଶଦିଗ ତାଙ୍କୁ ଶୂନ୍ୟ ବୋଧ ହେଲା । ତାଙ୍କର ଭଜନ ଓ ଚଉତିଶାମାନଙ୍କରୁ ତାଙ୍କ ଦାରୁଣ ମନୋବ୍ୟଥାର ପରିଚୟ ମିଳେ । ମହିମାସ୍ୱାମୀଙ୍କ ତିରୋଧାନ ପରେ ମହିମା ଗାଦି ଓ ମହିମା ସମାଜର ପରିଚାଳନା ପାଇଁ ଯେଉଁ ସଭା ଅନୁଷ୍ଠିତ ହୋଇଥିଲା ସେଥିରେ ଭୀମଭୋଇ ଯୋଗ ଦେଇଥିଲେ ।

**ଖଲିଅ ପାଲିରେ ଅବସ୍ଥାନ—**

ଉତ୍ତର ଜୀବନରେ ଭୀମଭୋଇ ସୋନପୁରର ଅଦୂରବର୍ତ୍ତୀ ଖଲିଆପାଲି ଗ୍ରାମରେ ଏକ ଆଶ୍ରମ ପ୍ରତିଷ୍ଠା କରି ତହିଁରେ ଅବସ୍ଥାନ କରୁଥିଲେ । ମହିମାସ୍ୱାମୀଙ୍କର ତିରୋଧାନ ପରେ ୧୮୭୭ ଖ୍ରୀଷ୍ଟାବ୍ଦରେ ଭୀମଭୋଇ ଖଲିଆପାଲିରେ ଆଶ୍ରମ ପ୍ରତିଷ୍ଠା କରି ସେଠାରେ ଅବସ୍ଥାନ କରିଥିବା ଜଣାଯାଏ । ଅନ୍ୟ କେତେକଙ୍କ ମତରେ ମହିମାସ୍ୱାମୀଙ୍କ ଆଦେଶ କ୍ରମେ ଭୀମଭୋଇ ଖଲିଆପାଲିରେ ଆଶ୍ରମ ପ୍ରତିଷ୍ଠା କରି, ସେହିଠାରେ ରହି ମହିମାଧର୍ମର ପ୍ରଚାର ଓ ପ୍ରସାରରେ ମନୋନିବେଶ କରିଥିଲେ । ସେତେବେଳକୁ ଭୀମଭୋଇଙ୍କ ନାମ ସମସ୍ତ ଉତ୍କଳରେ ପ୍ରଚାରିତ ହୋଇ ଯାଇଥିଲା । ତେଣୁ ବହୁ ଭକ୍ତ ଓ ଅନୁରାଗୀ ଖଲିଆପାଲି ଆଶ୍ରମକୁ ଆସି ତାଙ୍କର ଉପଦେଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ତାଙ୍କର ପୂଜା ଅର୍ଚ୍ଚନା କରିବାକୁ ଲାଗିଲେ ।

ମହିମାସ୍ୱାମୀଂକ ଅନ୍ତର୍ଦ୍ଧାନପରେ ପ୍ରତିବର୍ଷ ମାଘପୂର୍ଣ୍ଣିମା ବେଳକୁ ଭୀମଭୋଇଙ୍କ ମଠରେ ଏକ ମେଳା ଅନୁଷ୍ଠିତ ହେବାକୁ ଲାଗିଲା । ଭୀମଭୋଇଙ୍କର ଭକ୍ତ ଓ ଅନୁଗାମୀ ଗଣ ଏହି ମେଳାରେ ଯୋଗଦାନ କରି ତାଙ୍କୁ ଓ ମା, ଅନ୍ନପୂର୍ଣ୍ଣାଙ୍କୁ ଅର୍ଚ୍ଚନା କରୁଥିଲେ ଓ ନାନା ଉପହାର ପ୍ରଦାନ କରୁଥିଲେ । ଏହା ମହିମାଧର୍ମର ନୀତିବିରୁଦ୍ଧ । ତେଣୁ ମହିମା ଧର୍ମର ସାଧୁସନ୍ନ୍ୟାସୀମାନେ ଖଲିଆପାଲି ମଠରୁ ଭିକ୍ଷା ଗ୍ରହଣ କଲେ ନାହିଁ । ଏବେ ମଧ୍ୟ ମହିମାଧର୍ମର ସାଧୁସନ୍ନ୍ୟାସୀମାନେ ଉକ୍ତ ମଠରୁ ଭିକ୍ଷା ଗ୍ରହଣ କରନ୍ତି ନାହିଁ । ଭୀମଭୋଇ ଜଣେ ଉଦାରଚେତା ମାନବବାଦୀ କବି ଥିଲେ । ତେଣୁ ସେ ମହିମାଧର୍ମର କଠୋର ନିୟମନିଷ୍ଠା ମଧ୍ୟରେ ନିଜକୁ ବାନ୍ଧି ନ ରଖି ଲୋକମାନଙ୍କର ଭକ୍ତି ଅର୍ଘ୍ୟ ଗ୍ରହଣ କରି ସେମାନଙ୍କୁ ଅନୁଗୃହୀତ କରିବାକୁ ସମୀଚୀନ ମନେକରିଥିଲେ । ଭୀମଭୋଇ ଜଣେ ଦୃଷ୍ଟି ପ୍ରତିମ ବ୍ୟକ୍ତି ଥିଲେ । କୌଣସି ପ୍ରକାର କଳଙ୍କ ତାଙ୍କ ଅନ୍ତରକୁ ସ୍ପର୍ଶ କରିନଥିଲା ।

**ଜଗନ୍ନାଥ ମନ୍ଦିର ଆକ୍ରମଣ—**

୧୮୮୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚମାସ ଏକ ତାରିଖରେ ସମ୍ବଲପୁର ଜିଲ୍ଲାର ଦଳେ ମହିମାଧର୍ମାବଲମ୍ବୀ ଆଦିବାସୀ ପୌତ୍ତଳିକତାର ପ୍ରତୀକ ଜଗନ୍ନାଥ ମୂର୍ତ୍ତିକୁ ଦଗ୍ଧ କରିଦେବା ଉଦ୍ଦେଶ୍ୟରେ ଜଗନ୍ନାଥ ମନ୍ଦିରର ଭୋଗମଣ୍ଡପ ଦ୍ୱାର ଭାଙ୍ଗି ଜଗନ୍ନାଥମୂର୍ତ୍ତିକୁ ଆଣିବାକୁ ଯାଉଥିବା ସମୟରେ ମନ୍ଦିରର ପଣ୍ଡାମାନଙ୍କ ସହିତ ସେମାନଙ୍କର ସଂଘର୍ଷ ହୋଇଥିଲା । ସେହି ସଂଘର୍ଷରେ ଦଳର ମୁଖ୍ୟ ଦାସରାମ ତଳେ ପଡ଼ିଯାଇ ପ୍ରାଣ ହରାଇଥିଲେ । ସେହି ଦଳରେ ବାରଜଣ ପୁରୁଷ ଓ ଦୁଇଜଣ ସ୍ତ୍ରୀ ଥିଲେ । ଏକ ଧାର୍ମିକ ସମ୍ପ୍ରଦାୟର ଧର୍ମାନୁଷ୍ଠାନରେ ଅନଧିକାର ପ୍ରବେଶ ହେତୁ ପିଙ୍ଗଲ କୋଡ଼ର ଦଣ୍ଡବିଧି ଅନୁଯାୟୀ ସେମାନଙ୍କୁ ଦୁଇମାସ ଲେଖାଏଁ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

କଟକଠାରେ ଅବସ୍ଥାପିତ ଓଡ଼ିଶାର କମିସନରଙ୍କ ରିପୋର୍ଟ ଏବଂ ସି. ଇ. ବକଲାଣ୍ଡଙ୍କ ରଚିତ "ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ଅଧୀନରେ ବଙ୍ଗଳା" ଶୀର୍ଷକ ପୁସ୍ତକରୁ ଏହା ଜଣାଯାଏ । ପୂର୍ବୋକ୍ତ ଦଳ ସହିତ ସଂପୃକ୍ତ ୧୬ଜଣ ପୁରୁଷ, ୧୧ଜଣ ନାରୀ ଏବଂ ୧୧ଜଣ ବାଳକ ବିଶିଷ୍ଟ ଏକ ଦଳ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରିବା ପାଇଁ ପୁରୀ ଆଡ଼କୁ ଯାତ୍ରା କରୁଥିବା ବେଳେ ବାଟରେ ପୁଲିସ ଦ୍ୱାରା ଗିରଫ ହୋଇଥିଲେ । କେତେକଙ୍କ ମତରେ ଭୀମଭୋଇ ଏହି ଘଟଣା ସହିତ ସମ୍ପୃକ୍ତ ଥିଲେ—ତାଂକ ପ୍ରେରଣାରେ ଏବଂ ତାଙ୍କର ପ୍ରରୋଚନାରେ ଏହା ସଂଘଟିତ ହୋଇଥିଲା । କିନ୍ତୁ ଏହି ଧାରଣା ପଛରେ କୌଣସି ସତ୍ୟତା ଥିବା ଅନୁମିତ ହୁଏ ନାହିଁ । କାରଣ ଭୀମଭୋଇ ହିଂସାର ପକ୍ଷପାତୀ ନ ଥିଲେ । ପୌତ୍ତଳିକତାର ଘୋର ବିରୋଧୀ ହେଲେହେଁ ଜଗନ୍ନାଥଙ୍କୁ ଅଲେଖ ପରଂବ୍ରହ୍ମଙ୍କର ଏକ ଅବତାର ରୂପରେ ଗ୍ରହଣ କରୁଥିଲେ । ତାଂକ ରଚନାରେ ଜଗନ୍ନାଥ ଓ ନୀଳାଚଳ ଧାମରେ ଯେଉଁସବୁ ବର୍ଣ୍ଣନା ପ୍ରଦତ୍ତ ହୋଇଅଛି ତହିଁରୁ ଜଗନ୍ନାଥଙ୍କ ପ୍ରତି କୌଣସି ଅସମ୍ମାନର ଆଭାସ ମିଳେ ନାହିଁ । ଏହାଛଡ଼ା ତାହାଙ୍କ "ନିର୍ବେଦ ସାଧନ"

ଗ୍ରନ୍ଥରେ ସେ ଉଲ୍ଲେଖ କରିଅଛନ୍ତି ଯେ ମହିମାସ୍ୱାମୀଙ୍କର ଆବିର୍ଭାବ ପରେ ସ୍ୱୟଂ ଜଗନ୍ନାଥ ଜଗନ୍ନାଥ ଦାସ ରୂପରେ କପିଳାସରେ ତାହାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ଏହି ବିଷୟକୁ ଆଲୋଚନା କରି ତାହାଙ୍କର କେତେକ ଅନୁଚର ଏପରି ଏକ କାଣ୍ଡ ଘଟାଇଥିବା ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ । ହେଲେ ମହିମାଧର୍ମସମାଜ ଏହି ଘଟଣା ସହିତ କୌଣସି ପ୍ରକାରେ ଜଡ଼ିତ ନଥିଲା । କାରଣ ଯୋରନ୍ଦାର ମହିମା ଗାଦିଦ୍ୱାରା ପରିଚାଳିତ ମହିମା ସମାଜ ଭୀମଭୋଇଙ୍କ ଖଲିଆପାଲି ଆଶ୍ରମରେ ଉକ୍ତ ସମାଜର ନିୟମ, ଶୃଙ୍ଖଳା ଯଥାଯଥ ପାଳିତ ହେଉ ନଥିବାରୁ ଏହାକୁ ବର୍ଜନ କରିଥିଲେ ।

**କାହାଣୀ ଓ କିମ୍ବଦନ୍ତୀ—**

ଆମ ଦେଶର ସବୁ ମହାପୁରୁଷଙ୍କ ପରି ମହାପୁରୁଷ ଭୀମଭୋଇଙ୍କ ଜୀବନ ଚରିତକୁ କେନ୍ଦ୍ର କରି କେତେକ କାହାଣୀ ଓ କିମ୍ବଦନ୍ତୀ ଗଢ଼ିଉଠିଛି । କଥିତ ଅଛି—ଦିନେ ଭୀମଭୋଇ କୌଣସି ଗୋଟିଏ ଗ୍ରାମକୁ ଯାଉଥିବା ବେଳେ ବାଟରେ ତାଳଖାଇ ନୃତ୍ୟ ହେଉଥିବାର ଦେଖିଲେ । ଆଗକୁ ବଢ଼ିବାକୁ ବାଟ ନମିଳିବାରୁ ସେ ରାଧାକୃଷ୍ଣଙ୍କ ନାମରେ ତାଳଖାଇ ଓ ରସରକେଲିଭଙ୍ଗୀରେ ଜାଇଫୁଲ ଓ ରସ ଯା ବୃନ୍ଦା ନାମରେ ଦୁଇଟି ଚଉପଦୀ ରଚନା କରି ତାହା ଗାନ କରିବାକୁ ଓ ନାଚିବାକୁ ଲାଗିଲେ । ଏଥିରେ ଆଚମ୍ବିତ ହୋଇ ଲୋକେ ତାଙ୍କୁ ପଥ ଛାଡ଼ିଦେଇଥିଲେ ।

ଭୀମ ଅନେକ ସମୟରେ ନାରୀବେଶ ଧାରଣ କରୁଥିବା ବିଷୟ ବିଶ୍ୱନାଥ ବାବାଙ୍କ ପ୍ରଣୀତ ମହିମାଧର୍ମର ଇତିହାସ ପୁସ୍ତକରୁ ଜଣାଯାଏ । ସେଥିରୁ ଜଣାଯାଏ ଯେ ବାର୍ଙ୍କିର ମାଳିବିହାରପୁରରେ ସ୍ଥାପିତ ଧୂନି ଉତ୍ସବରେ ଯୋଗଦେବା ପାଇଁ ଭୀମଭୋଇ ନିଜର ଅନୁଗାମୀମାନଙ୍କ ସହିତ ସେଠାକୁ ଯାଇଥିଲେ । ସେଠାରେ ସେ ନାରୀବେଶ ଧାରଣ ପୂର୍ବକ ନାଚି ନାଚି କଣାଣ ଗାନ କରିଥିଲେ । ମହିମାସ୍ୱାମୀ ସେତେବେଳେ ଢେଙ୍କାନାଳରେ ଅବସ୍ଥାନ କରୁଥିଲେ । ମହିମା ସ୍ୱାମୀ ଏ ବିଷୟ ଲୋକମାନଙ୍କ-ଠାରୁ ଶୁଣିବାକୁ ପାଇ ଭୀମଭୋଇଙ୍କୁ ଢେଙ୍କାନାଳ ନଯାଇ ନିଜ ସ୍ଥାନକୁ ଫେରି ଯିବାକୁ ନିର୍ଦ୍ଦେଶ ଦେଇଥିଲେ । ଉତ୍କଳର ଅନ୍ୟ କେତେକ ମହାପୁରୁଷମାନଙ୍କ ପରି ଭୀମଭୋଇ ନିଜକୁ ଜାତିସ୍ମର ବୋଲି କହିଅଛନ୍ତି । ସ୍ତୁତିଚିନ୍ତାମଣି ଗ୍ରନ୍ଥରେ ସେ କହିଅଛନ୍ତି ଯେ ମହିମାସ୍ୱାମୀଙ୍କର ନିର୍ଦ୍ଦେଶରେ ସେ ମର୍ତ୍ତ୍ୟଭୂମିରେ ଅବତୀର୍ଣ୍ଣ ହୋଇଥିଲେ ।

**ମହାପ୍ରୟାଣ—**

ଭୀମଭୋଇ ୧୮୯୫ ମସିହାରେ ୪୭ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ । ପ୍ରାତଃ ଶରଣଦର୍ଶନ ସମାପନ କରି ସେ ନିଜ ବାସଭବନ ପ୍ରାଙ୍ଗଣରେ ପୂର୍ବାଭିମୁଖୀ ହୋଇ ଉପବେଶନ ପୂର୍ବକ ମହିମାସ୍ୱାମୀଙ୍କ ନାମ ସ୍ମରଣ କରୁ କରୁ ନଶ୍ୱର ଶରୀର ତ୍ୟାଗ କରିଥିଲେ । ତାଙ୍କ ସମାଧି ସ୍ଥଳରେ ସୋନପୁର ମହାରାଜାଙ୍କ ଅନୁମତି କ୍ରମେ ଏକ

ସମାଧି ମନ୍ଦିର ନିର୍ମିତ ହୋଇଥିଲା । ତାଙ୍କର ସହଧର୍ମିଣୀ ଅନ୍ନପୂର୍ଣ୍ଣାଙ୍କୁ ମଧ୍ୟ ଉକ୍ତ ମନ୍ଦିରରେ ସମାଧି ଦିଆଯାଇଥିଲା । ସେହି ସ୍ମୃତିମନ୍ଦିରଟି ଏବେ ମଧ୍ୟ ବିଦ୍ୟମାନ ଅଛି ଏବଂ ସେ ଅଞ୍ଚଳର ଲୋକେ ଭକ୍ତକବି ମହାପୁରୁଷ ଭୀମଭୋଇଙ୍କ ପୂଜା ଅର୍ଚ୍ଚନା କରୁଅଛନ୍ତି ।

**ସଂଗ୍ରାମ ଓ ସାଧନା—**

ଭକ୍ତକବି ମହାପୁରୁଷ ଭୀମଭୋଇଙ୍କର ଜୀବନ ଥିଲା କଠୋର ସଂଗ୍ରାମ ଓ ଅଖଣ୍ଡ ସାଧନାମୟ ଏକ ଜୀବନ । ସେ ଏକ ଦରିଦ୍ର ଆଦିବାସୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତହିଁରେ ପୁଣି ବାଲ୍ୟକାଳରୁ ତାଙ୍କର ପିତୃବିୟୋଗ ଘଟିଥିଲା । ଫଳରେ ଜୀବନ ଧାରଣ ପାଇଁ ତାଙ୍କୁ ଶୈଶବାବସ୍ଥାରୁହିଁ କଠୋର ସଂଗ୍ରାମ କରିବାକୁ ପଡ଼ିଥିଲା । ଦୁଃଖ ଓ ନିର୍ଯାତନା ଥିଲା ତାଙ୍କର ଭାଗ୍ୟଲିପି । ଅଧିକାଂଶ ସମୟରେ ତାଙ୍କୁ ଅର୍ଦ୍ଧାହାର ଓ ଅନାହାରରେ କାଳଯାପନ କରିବାକୁ ପଡୁଥିଲା । ବାରବର୍ଷ ବୟସରେ ସେ ଗ୍ରାମର ଜଣେ ଧନୀ ବ୍ୟକ୍ତିଙ୍କ ଗୃହରେ ଗୋରୁଚରାଇବା କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ବନଜାତ ଜଙ୍ଗଲରେ ଗୋରୁ ଚରାଇ ରାତିରେ ସେ ଟିକିଏ ବିଶ୍ରାମ ପାଉଥିଲେ । ସେଥିରେ ପୁଣି ଅନେକ ସମୟରେ ଗୃହମାଲିକଙ୍କଠାରୁ ତାଙ୍କୁ ଗାଳିମାଡ଼ ସହିବାକୁ ପଡ଼ୁଥିଲା । ଅକଥନୀୟ ଦୁଃଖ ଓ ନିର୍ଯାତନାରେ ତାଙ୍କର କୋମଳ ହୃଦୟ କ୍ଷତବିକ୍ଷତ ଓ ରୁଧିରାକ୍ତ ହୋଇ ଯାଉଥିଲା । 'ସ୍ତୁତି ଚିନ୍ତାମଣି' କାବ୍ୟରେ ସେ ତାଙ୍କର ଦୁଃଖ ଓ ଯାତନାମୟ ଜୀବନର ଯେଉଁ ଆଲେଖ୍ୟ ପ୍ରଦାନ କରିଛନ୍ତି ତାହା ପାଠକଲେ ପାଠକର ଦେହ ଶିହରିଉଠେ ଓ ଚକ୍ଷୁ ଲୋତକସିକ୍ତ ହୁଏ । ଏଥିରେ ସେ କିନ୍ତୁ ଭାଙ୍ଗି ପଡ଼ିନଥିଲେ । ଭବିଷ୍ୟତ ଉପରେ ଆଶା ଓ ବିଶ୍ୱାସ ରଖି ସେ ଲକ୍ଷ୍ୟସ୍ଥିର ଭାବରେ ଜୀବନପଥରେ ଅଗ୍ରସର ହୋଇଥିଲେ ।

ତାଙ୍କୁ ଯେତେବେଳେ ପନ୍ଦରବର୍ଷ ବୟସ ସେତେବେଳେ ତାଙ୍କ ଜୀବନରେ ଏକ ସମ୍ପୂର୍ଣ୍ଣ ନୂତନ ଅଧ୍ୟାୟ ଉଦ୍‌ଘାଟିତ ହେଲା । ଏକ ନିର୍ଜନ ନିଶିଥରେ ପ୍ରବୃଦ୍ଧଗୁରୁ ମହିମାସ୍ୱାମୀ ତାଙ୍କ ଗୃହରେ ପଦାର୍ପଣପୂର୍ବକ ତାଙ୍କୁ ମହିମା ଧର୍ମର ଦୀକ୍ଷା ପ୍ରଦାନକଲେ ଏବଂ କବିତା ମାଧ୍ୟମରେ ମହିମାଧର୍ମର ବାଣୀ ଲୋକରେ ପ୍ରଚାର କରିବାକୁ ଆଦେଶ କଲେ । ପ୍ରଭୁ ମହିମା ସ୍ୱାମୀଙ୍କ ଅପାର କରୁଣାବଳରେ ତାଙ୍କର ଅନ୍ତର୍ନିହିତ କବିତ୍ୱ ଶକ୍ତିର ସ୍ଫୁରଣ ହେଲା ଏବଂ ସେ ମହିମାଧର୍ମର ପ୍ରଚାର ଓ ପ୍ରସାରକୁ ନିଜ ଜୀବନର ପରମ ଲକ୍ଷ୍ୟ ରୂପେ ଗ୍ରହଣକଲେ । ଏହା ପରେ ଭୀମଭୋଇ ମହିମାସ୍ୱାମୀଙ୍କର ବାଣୀ ଓ ଉପଦେଶକୁ ନାନା ସ୍ତୁତି, ଜଣାଣ, ଚଉତିଶା, ଭଜନ ଓ କାବ୍ୟକବିତା ମାଧ୍ୟମରେ ଲୋକଙ୍କରେ ପ୍ରଚାର କରି ଚାଲିଲେ । ଭୀମଭୋଇଙ୍କର ପ୍ରାଣମତାଣିଆ କବିତା ଉତ୍କଳର ଅଗଣିତ ଜନତାର ପ୍ରାଣରେ ନୂତନ ସ୍ପନ୍ଦନ ଖେଳାଇଦିଏ ଏବଂ ଗ୍ରାମେ ଗ୍ରାମେ ଘରେ ଘରେ ସ୍ତ୍ରୀପୁରୁଷ, ବୃଦ୍ଧ ବାଳକ ସମସ୍ତେ ମହିମାଧର୍ମ ଗ୍ରହଣ କରି ମୁକ୍ତିର ପଥ ସୁଗମ କରିବା ପାଇଁ ଉଦ୍‌ବିଗ୍ନ ହୋଇଛନ୍ତି ।

ମହିମାଧର୍ମ ଏକ ନିର୍ବେଦ ଧର୍ମ । ଏହା ବେଦର ବର୍ଣ୍ଣବ୍ୟବସ୍ଥା, ଜାତିବିଚାର, ଦେବାରାଧନା, ମନ୍ତ୍ର, ଜପ, ହୋମ ଓ ଯାଗଯଜ୍ଞାଦିକୁ ଗ୍ରହଣ କରେ ନାହିଁ । ଏହା

ଜାତପ୍ରଥା, ପୌତ୍ତଳିକତା ଓ ପୌରୋହିତ୍ୟର ଘୋର ବିରୋଧୀ । ମହିମାଧର୍ମାବଲମ୍ବୀମାନେ ଏକେଶ୍ୱରବାଦୀ । ଏକ ଅଦୃଷ୍ଟ ପରଂବ୍ରହ୍ମ ହିଁ ସେମାନଙ୍କର ଏକମାତ୍ର ଉପାସ୍ୟ । ପରଂବ୍ରହ୍ମଙ୍କୁ ପାଇବା ପାଇଁ ମନ୍ତ୍ର, ହୋମ, ଯାଗଯଜ୍ଞ ଓ ତୀର୍ଥବ୍ରତାଦି ଆଡ଼ମ୍ବରପୂର୍ଣ୍ଣ ଓ ବ୍ୟୟସାପେକ୍ଷ ଆଚାରାଦିର ଅନୁଷ୍ଠାନ ମଧ୍ୟ ନିଷ୍ପ୍ରୟୋଜନ । ନାମଭଜନ, ଶୁଦ୍ଧ ନିର୍ମଳ ଭକ୍ତି, ପରିପୂର୍ଣ୍ଣ ଆତ୍ମସମର୍ପଣ ଓ ନିଷ୍କାମ ଜୀବନ ଯାପନ ଦ୍ୱାରା ପ୍ରଭୁଙ୍କୁ ପାଇବା ସହଜ । ସବୁ ମଣିଷ ପରମପିତା ପରମେଶ୍ୱରଙ୍କର ସନ୍ତାନ । ତେଣୁ ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ସବୁ ଜାତି ସମାନ । ଜଗତରେ କେବଳ ଦୁଇଗୋଟି ଜାତି ଅଛୁ—ସେମାନେ ହେଲେ ସ୍ତ୍ରୀ ଓ ପୁରୁଷ । ମହିମାଧର୍ମାବଲମ୍ବୀମାନଙ୍କ ମଧ୍ୟରେ ପରସ୍ପରର ଘରେ ପାନ ଭୋଜନର କୌଣସି କଟକଣା ନାହିଁ । ସେମାନେ ପ୍ରତିମା ପୂଜାର ଘୋର ବିରୋଧୀ । ସେମାନେ କହନ୍ତି ଯେ କାଠ, ପଥର ଆଦି ନିର୍ଜୀବ ପଦାର୍ଥରେ ଗଢ଼ା ପ୍ରତିମା କଦାପି ମୁକ୍ତି ପ୍ରଦାନ କରି ପାରିବ ନାହିଁ । ଈଶ୍ୱର ଅରୂପ, ଅବର୍ଣ୍ଣ, ଅଣାକାର ଓ ଅଲେଖ । ପ୍ରତିମା ପୂଜା ବୃଥା । ସେଥିପାଇଁ ମହିମାଧର୍ମାବଲମ୍ବୀମାନଙ୍କ ପାଇଁ ମନ୍ଦିର ପ୍ରବେଶ, ଦେବଦର୍ଶନ, ଦେବପ୍ରସାଦ ସେବନ, ମାଳା, ତିଳକ ଓ ତୁଳସୀମାଳା ଧାରଣ ଓ ତୁଳସୀପତ୍ର ସେବନ ନିଷିଦ୍ଧ । ବୈଦିକ କର୍ମକର୍ମାଣିରେ ସେମାନଙ୍କର ଆସ୍ଥା ନାହିଁ । ଈଶ୍ୱରଙ୍କ ନାମ ସ୍ମରଣ, ନାମ ଭଜନ ଏବଂ ନିଷ୍କାମ ଭକ୍ତି ତାହାଙ୍କୁ ପାଇବାର ସୁଗମ ପଥ । ଭକ୍ତ କବି ଭୀମଭୋଇ ମହିମାସ୍ୱାମୀଙ୍କର ଏହି ବାଣୀ ତାଙ୍କର ଭଜନ, ଜଣାଣ ଓ କାବ୍ୟକବିତାରେ ପ୍ରଚାର କରିବାକୁ ଲାଗିଲେ । ତାଙ୍କର ଆବେଗଭରା ବାଣୀ ଜନସାଧାରଣଙ୍କ ମନକୁ ସ୍ପର୍ଶ କଲା । ସେମାନଙ୍କ ମଧ୍ୟରେ ଅପୂର୍ବ ଜାଗରଣ ଦେଖାଗଲା । ସେମାନେ ଅଧିକରୁ ଅଧିକ ସଂଖ୍ୟାରେ ମହିମାଧର୍ମପ୍ରତି ଆକୃଷ୍ଟ ହେବାକୁ ଲାଗିଲେ ।

ଜାତିଉପଜାତିଭେଦରେ ଶତଧାବିଦୀର୍ଣ୍ଣ ପରମ୍ପରାସର୍ବସ୍ୱ ହିନ୍ଦୁ ସମାଜ ମହିମାସ୍ୱାମୀଙ୍କର ଏହି ଉଦାର ମତବାଦକୁ ଗ୍ରହଣ କଲାନାହିଁ । ଲୋକେ ଚିରାଚରିତ ପନ୍ଥା ଛାଡ଼ି ଅମଡ଼ାରେ ପଶିବାକୁ ଚାହିଁଲେ ନାହିଁ । ଅହିଂସା, ସତ୍ୟ, ମାନବିକତା ଓ ସାମ୍ୟ ନୀତି ଉପରେ ଆଧାରିତ ଏହି ଧର୍ମର ମର୍ମ ଲୋକେ ଧରିପାରିଲେ ନାହିଁ । ତେଣୁ ସେମାନେ ଏହାର ବିରୋଧ କଲେ । ମହିମାଧର୍ମ ଓ ତାର ପ୍ରବକ୍ତା ଭୀମଭୋଇଙ୍କର ସେମାନେ କୁତ୍ସା ରଟନା କରିବାକୁ ଲାଗିଲେ । ଭୀମଭୋଇ ସେମାନଙ୍କର ଭର୍ତ୍ସନା, ତିରସ୍କାର, ନିନ୍ଦା, ଅପମାନ, ଉପହାସ ଓ ପରିହାସର ଶିକାର ହେଲେ । ଲୋକମାନଙ୍କର ମହିମାଧର୍ମପ୍ରତି ଉଦାସୀନତା ଓ ଶତ୍ରୁ ମନୋଭାବ ଭୀମଭୋଇଙ୍କୁ ଅତ୍ୟନ୍ତ ଅଧୀର କରି ପକାଇଲା । ଦୁଃଖ ଓ ନୈରାଶ୍ୟରେ ମ୍ରିୟମାଣ ହୋଇ ସେ ଗାଇଉଠିଛନ୍ତି—

"ଜଣାଇଲି ଯେତେ ତୁମ୍ଭ ପାଦଗତେ ବୋଇଲ ମୋତେ ବୁଝିବା ।
ମହିମା ମହିମା ବୋଲିବାକୁ ପ୍ରଭୁ ଖଙ୍ଗୁଛି ମୋର ଗରିମା ॥

ଖୀବସ୍ଥାନ ବୋଲି ଗାଳି ନିନ୍ଦା ଅପବାଦ କରୁଛନ୍ତି ଲୋକ
ଅଲେଖ ଅଲେଖ ବୋଲିବାକୁ ପ୍ରଭୁ ଦେଉଛ ଦୁର୍ଦ୍ଧଣ୍ଡ ଦୁଃଖ ॥
ବସନ ପରସ୍ତେ ଘୋଡ଼ାଇଛୁ କାଏ କଳଙ୍କ ପାପ ବକଳ ।
ସତ୍ୟ ସତ୍ୟ ଧର୍ମ ବୋଲିବାକୁ ପ୍ରଭୁ ନିନ୍ଦୁଅଛନ୍ତି ସକଳ ॥
ଜଗତର ହିତେ ବାଞ୍ଛିଲିଁ ଗୀତେ ମୋ ମନକୁ କଣ ସତ ।
ଅବଧୂତ ଅବଧୂତ ବୋଲିବାକୁ ବୋଇଲେ ବାବନାଭୂତ ॥
ମୁକଟ ପସର ଢଗଦୀପାନ୍ତର ବୋଲାଇଲେ ଭକ୍ତେ ନେଇ ।
ଅଣାକାର ଅଣାକାର ବୋଲିବାକୁ ଅନାଇଁ ଦେଖିଲେ ନାହିଁ ॥
ଅଜ୍ଞାନେ ବହୁତ ବୁଡ଼ିଅଛୁ ଚଣ୍ଡ ଉଛପଦେ ଉତପାତ ।
ନିଷ୍କାମ ନିଷ୍କାମ ବୋଲିବାକୁ ପ୍ରଭୁ ନିଖେ ଦେଉଛନ୍ତି ହାତ ॥
ନିଜ ନାମ ନିନ୍ଦ ମାରୁଛନ୍ତି ବାନ୍ଧ ହୋଇଲେଣି ଅପରାଧୀ ।
ନିର୍ଗୁଣ ନିର୍ଗୁଣ ବୋଲିବାକୁ ପ୍ରଭୁ ଗ୍ରାମରୁ ଦେଲେଣି ଖେଦ ॥

× × ×

କି ଧର୍ମ ଏ ହେଲା ଜଣାତ ନଗଲା କହଁ ଶୁଣିଥାଉ ବେଳେ ।
ମହିମା ମହିମା ବୋଲିବାକୁ ସ୍ୱାମୀ ମହୁର ବିଷ ମଣିଲେ ॥
ମୂର୍ତ୍ତିବନ୍ତ ତେଜ ଠାକୁରଙ୍କ ଭଜ କାହିଁ ତୋର ଗୁରୁ ଦେଖା ।
ଅରୂପ ଅରୂପ ବୋଲିବାକୁ ବୋଲି ଆସି ରଖୁ ତୁମ୍ଭ ବାପା ॥ (ବଂଶ ବୋଲି)

× × ×

ନ ଦିଅରେ ଠାବ ମୂଢ଼ ପାପୀଜନ ଦେଖିଲେ ଦୂରୁ ନିବାର ।
ସମଦୀକ୍ଷା ସମଦୀକ୍ଷା ବୋଲିବାକୁ ବୋଇଲେ ଶ୍ୱାନକୁକ୍କୁର ॥
ଏ ବଚନ ଶୁଣି ମନେ ମନେ ଗୁଣି ବେନି ପଦ ନ ଚଳଇ ।
ଯହିଁ ଗଲେ ତହିଁ ଉଦଣ୍ଡ ଏ କଲେ ପ୍ରଚରିବୁ ଆମ୍ଭେ କାହିଁ ॥"

ଏଥିରୁ ଜଣାଯାଏ ଯେ ମହିମାଧର୍ମ ପ୍ରଚାରରେ ଭୀମଭୋଇ ପ୍ରବଳ ବିରୋଧର ସମ୍ମୁଖୀନ ହୋଇଥିଲେ । ମହିମା ଧର୍ମର ଉଦାର ବାଣୀ ସମାଜର ଦଳିତ, ଲାଞ୍ଛିତ ଓ ନିପୀଡ଼ିତ ଜନତାର ପ୍ରାଣରେ ନବୀନ ଆଶା ଆକାଂକ୍ଷାର ସଞ୍ଚାର କରିଥିଲା ଏବଂ ସେମାନେ ମହିମା ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ଏହା ଦେଖି ରଜା, ବ୍ରାହ୍ମଣ ଓ ସମାଜର ଅନ୍ୟାନ୍ୟ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଅନ୍ତରରେ ଆତଙ୍କର ସଞ୍ଚାର ହୋଇଥିଲା ଏବଂ ସେମାନେ ମହିମା ଧର୍ମର ଉଦ୍‌ଗାତା ଭୀମଭୋଇଙ୍କ ନିନ୍ଦା ରଟନାରେ ଶତମୁଖ ହୋଇଉଠିଥିଲେ । ଏହାକୁ ଲକ୍ଷ୍ୟ କରି ଭୀମଭୋଇ ଲେଖିଛନ୍ତି—

ଧର୍ମ ହେବେ ବଳୀ ଏ ମାନବ ଡଳୀ ବହିଗଲା କେତେ ଦିନ ।
ଜନ୍ତାଙ୍କୁ ବସ୍ତ୍ର ପ୍ରାପ୍ତ କରି କେତେ ପିନ୍ଧିବ କଣ୍ଠୀରେ କରି ଭୂଷଣ ।।
ହାସ୍ୟ ଭର୍ତ୍ସନା ବାଳି ଯେବେ ହିଂସାକୁ ଗଳାରେ କରିବ ମାଳ ।
ଟାଙ୍କି ଟାଙ୍କି ମୁର୍ତ୍ତି ଆଗତକୁ ସୃଷ୍ଟି ବହିଯାଉଅଛି କାଳ ।।

ଧର୍ମଧ୍ୱଜୀ, ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଏହି ଅପପ୍ରଚାରରେ ମହାପ୍ରାଣ ଭୀମଭୋଇ କ୍ରୋଧରେ ପ୍ରଜ୍ୱଳିତ ହୋଇ ଆବେଗଭରା ହୃଦୟରେ ଗାଇଉଠିଛନ୍ତି—

"କାହାରି ଶତ ପୁରୁଷର ସମ୍ପତ୍ତି ମୁଁ ହଡାଇ ନ ଦେଇ ।
ଅକାରଣେ ସର୍ବେ ଭ୍ରମ ମରୁଛନ୍ତି ମୋଠାରେ ଶତ୍ରୁତା ହୋଇ ।।"

ଧର୍ମଧ୍ୱଜୀ, ନ୍ୟସ୍ତସ୍ୱାର୍ଥଗୋଷ୍ଠୀ ବିରୁଦ୍ଧରେ ଏହି ସଂଗ୍ରାମରେ ଭୀମଭୋଇ ଅତ୍ୟନ୍ତ ବିଚଳିତ ହୋଇପଡ଼ିଥିଲେ ମଧ୍ୟ ଦବି ଯାଇ ନ ଥିଲେ କିମ୍ବା ପରାଜୟ ସ୍ୱୀକାର କରି ନଥିଲେ । ମହିମା ଧର୍ମର ବିଜୟ ଓ ପ୍ରତିଷ୍ଠା ନିମିତ୍ତ ସେ ଦ୍ୱିଗୁଣ ଉତ୍ସାହରେ ଲାଗିପଡ଼ିଥିଲେ ।

ବୈଷ୍ଣବିକ ହିନ୍ଦୁ ସମ୍ପ୍ରଦାୟ ବ୍ୟତୀତ ଭୀମଭୋଇଙ୍କୁ ତାଙ୍କର ସମସାମୟିକ ସମାଜ ବିରୁଦ୍ଧରେ ମଧ୍ୟ ସଂଗ୍ରାମ କରିବାକୁ ହୋଇଥିଲା । ତାଙ୍କର ସମସାମୟିକ ସମାଜ ଥିଲା ଏକ ଛିନ୍ନଭିନ୍ନ ଓ ପତନଶୀଳ ସମାଜ । ଦୀର୍ଘକାଳର ଦାସତ୍ୱ ଓ ପରାଧୀନତା ଫଳରେ ଲୋକମାନେ ସେମାନଙ୍କର ଉଚ୍ଚ ନୈତିକ ମୂଲ୍ୟବୋଧ ହରାଇ ବସିଥିଲେ । ସମାଜରେ ସଂଯମ, ଶୃଙ୍ଖଳା ଓ ସ୍ୱାଧୀନ ଚିନ୍ତାର ଘୋର ଅଭାବ ପରିଲକ୍ଷିତ ହେଉଥିଲା । ଆଧ୍ୟାତ୍ମିକ ମୂଲ୍ୟବୋଧ ଲୋପ ପାଇବାକୁ ବସିଥିଲା । ଧର୍ମର ମୂଳ ଲକ୍ଷ୍ୟ ବିସ୍ମୃତ ହୋଇ ଲୋକେ ଭୌତିକ ସୁଖଭୋଗକୁ ଜୀବନର ଏକମାତ୍ର ଧ୍ୟେୟ ରୂପେ ଗ୍ରହଣ କରିନେଇଥିଲେ । ଫଳରେ ନାନା ପ୍ରକାର ଭ୍ରଷ୍ଟାଚାର ଓ ଯୌନ ବ୍ୟଭିଚାର ସମାଜରେ ବ୍ୟାପକ ଭାବରେ ଦେଖାଦେଇଥିଲା । ଏହା ସମାଜର ମେରୁଦଣ୍ଡକୁ ଗଭୀର ଭାବରେ ଦୋହଲାଇ ଦେଇଥିଲା । ଲୋକେ ଶାନ୍ତି, ଶୀଳ, ଦୟା ଓ କ୍ଷମା ଆଦି ଜୀବନର ସୁକୁମାର ବୃତ୍ତିଗୁଡ଼ିକ ପ୍ରତି ଏକାନ୍ତ ବୀତସ୍ପୃହ ହୋଇପଡ଼ିଥିଲେ । ବାଦ, ଛିଦ୍ର, ହିଂସା, କପଟତା, ମିଥ୍ୟା, ଛଳନା, ପ୍ରବଞ୍ଚନା, ଅହଂକାର, ଲୋଭ, ମୋହ, କାମ, କ୍ରୋଧ, ଅସହିଷ୍ଣୁତା, ପରସ୍ତ୍ରୀକାତରତା, ଚୌର୍ଯ୍ୟ, ସୁରାପାନ ଓ ଯୌନ ବ୍ୟଭିଚାର ଆଦି ଆସୁରିକ ପ୍ରବୃତ୍ତି ସମାଜକୁ କଳଙ୍କିତ କରିପକାଇଥିଲା । ଏକ କଥାରେ ମନୁଷ୍ୟ ପଶୁ ପାଲଟିଯାଇଥିଲା । ଅଜ୍ଞତାର ଅନ୍ଧକାର ଜନମାନସକୁ ଆଚ୍ଛନ୍ନ କରି ରଖିଥିଲା । ଧର୍ମର ମୂଳତତ୍ତ୍ୱ ଭୁଲି ଲୋକେ ପିତୁଳା ପୂଜା, ଓଷା, ତୀର୍ଥ ବ୍ରତ ଓ ଯନ୍ତ୍ର ମନ୍ତ୍ର ତନ୍ତ୍ରକୁ ଧର୍ମ ବୋଲି ବିଶ୍ୱାସ କରୁଥିଲେ । ଭୀମଭୋଇ ତାହାଙ୍କର ସ୍ତୁତିଚିନ୍ତାମଣି ଓ ଅନ୍ୟାନ୍ୟ କାବ୍ୟକବିତା ମାଧ୍ୟମରେ ପ୍ରଚଳିତ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଅଭିଯାନ ଆରମ୍ଭ କରି ଦେଇଛନ୍ତି ଏବଂ ତାର ଗଳିତ କ୍ଷତସ୍ଥାନମାନଙ୍କରେ ଅସ୍ତ୍ରୋପଚାର ଆରମ୍ଭ କରିଦେଇଛନ୍ତି । ସେ ଅତି କଠୋର ଭାଷାରେ କଳିଯୁଗର

ଉତ୍ପାତ ନାମରେ ସମାଜର ସମାଲୋଚନା କରିଛନ୍ତି ଏବଂ ଏହି ମହା ବିପଦରୁ ଜଗତକୁ ରକ୍ଷା କରିବା ପାଇଁ ପରଂବ୍ରହ୍ମଙ୍କଠାରେ କାତର ନିବେଦନ ଜଣାଇଛନ୍ତି । ସମାଜର ବୀଭତ୍ସ ନଗ୍ନ ରୂପକୁ ପଦାରେ ପକାଇ ଦେବାକୁ ଯାଇ ସେ ବେଳେବେଳେ ଶ୍ଳୀଳତାର ସୀମା ଲଙ୍ଘନ ମଧ୍ୟ କରିଛନ୍ତି ।

ଭୀମଭୋଇଙ୍କର ଅଗ୍ନିମୟୀ ବାଣୀ ବେଳେବେଳେ ପାଠକର ହୃଦୟକୁ ସ୍ତମ୍ଭୀଭୂତ କରିଦିଏ—

"ନବଖଣ୍ଡ ମଣ୍ଡି ଆଳି ପ୍ରାପ୍ତ ହୋଇ ହେଜିଲେ ମନକୁ ଦିଶେ ।
ଏକା ଦିବସରେ କ୍ଷଣକ ଭିତରେ ଦ୍ୟନ୍ତ ପୃଥ୍ୱୀ ଲେଉଟାଇ ।
ଦନ୍ତ ଚାମୁଣ୍ଡ କି ବୁଦ୍ଧି କରିବ ଶ୍ରୀଗୁରୁଙ୍କ ଆଜ୍ଞା ନାହିଁ ।।"

ରେଢ଼ାଖୋଲ ଗଡ଼ଜାତର ଏକ ଅଜ୍ଞାତ ଅଖ୍ୟାତ ପଲ୍ଲୀର ଜଣେ ଦରିଦ୍ର ଅନ୍ଧ କବିର ଏହି ବୈପ୍ଳବିକ ଆହ୍ୱାନ ଆମକୁ ବିସ୍ମୟାଭିଭୂତ କରିଦିଏ ଏବଂ ତାଙ୍କ ନିକଟରେ ସ୍ୱତଃ ମଥା ନଇଁଯାଏ । ଯଥାର୍ଥରେ ଭୀମଭୋଇ ଓଡ଼ିଆ ସାହିତ୍ୟର ଆଦି ବିପ୍ଳବୀ କବି ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରଚଳିତ ସମାଜ ବ୍ୟବସ୍ଥା ବିରୁଦ୍ଧରେ ଅବ୍ୟାହତ ସଂଗ୍ରାମ ଚଳାଇବା ସଙ୍ଗେ ସଙ୍ଗେ ଭୀମଭୋଇ ଅଧ୍ୟାତ୍ମ ସାଧନା କ୍ଷେତ୍ରରେ ଦ୍ରୁତଗତିରେ ଅଗ୍ରସର ହୋଇଛନ୍ତି । ଏ ସାଧନା ହେଉଛି ସତ୍ୟ, ଅହିଂସା, ଐକ୍ୟ, କରୁଣା, ମୈତ୍ରୀ ଓ ନିଷ୍କାମ କର୍ମଯୋଗର ସାଧନା । ଏହାହିଁ ବ୍ରହ୍ମ ସାଧନା । ଆତ୍ମା ଏକ ଏବଂ ଅଭିନ୍ନ । ମନୁଷ୍ୟ, ପଶୁପକ୍ଷୀ, କୀଟପତଙ୍ଗ, ସ୍ଥାବର ଜଙ୍ଗମ ସର୍ବତ୍ର ସେହି ଏକ ଆତ୍ମାର ଖେଳାଲୀଳା । ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ଅଣୁପରମାଣୁରେ ସେହି ଏକ ଆତ୍ମା ବା ବ୍ରହ୍ମ ବିଦ୍ୟମାନ । ଏ ବିଶ୍ୱ ବ୍ରହ୍ମମୟ ।

"ଜଳସ୍ଥଳାନଳ ପବନ ଶରୀରେ ଭିତର ବାହାରେ ରହି ।
ଶବଦ ସ୍ୱରୂପ ହୋଇ ଅପରୂପ ଆତ୍ମାଭୂତ ପ୍ରାପ୍ତ ହୋଇ ।।
ସାନ ଦେହେ ସାନ ବଡ଼ ଦେହେ ବଡ଼ ଜୀବ ଅଜୀବ ସମାନ ।
ବିକାର ଅଣବିକାର ଠାବେ ବସି ନ ଥାଇଟି ଭିନ୍ନାଭିନ୍ନ ।।
ଦୁଷ୍ଟ ଦୁରାତ୍ମରେ ଦୈତ୍ୟ ଦାନବରେ ସକଳ ଘଟେ ବିଶ୍ରାମ ।
କାହିଁ ଶୂନ୍ୟ ନାହିଁ ସକଳ ଭୂତରେ ବହି ଜୀବବ୍ରହ୍ମ ନାମ ।।"

( ସ୍ତୁତି ଚିନ୍ତାମଣି—୪୭ ବୋଲି )

ଏହାହିଁ ବ୍ରହ୍ମଜ୍ଞାନ । କିନ୍ତୁ ଏହାକୁ ଉପଲବ୍ଧି କରି ଅନୁଭବରେ ଆଣିବାକୁ ହେବ ଏବଂ ଆଚରଣରେ ରୂପାୟିତ କରିବାକୁ ହେବ । ମନୁଷ୍ୟ, ପଶୁପକ୍ଷୀ, ବୃକ୍ଷଲତା, ବାୟୁ, ଆକାଶ, ଜଳ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ଧରଣୀ, ପାତାଳ ସର୍ବତ୍ର ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କର ଉପସ୍ଥିତି ଅନୁଭବ କରିବାକୁ ହେବ । ସର୍ବଭୂତଙ୍କୁ ପରମାତ୍ମାଙ୍କଠାରେ ଏବଂ ପରମାତ୍ମାଙ୍କୁ ସର୍ବଭୂତରେ ଦେଖିବାକୁ ହେବ ।

"ସର୍ବଭୂତାନି ଆତ୍ମନ୍ୟେବ ପଶ୍ୟତି ।
ସର୍ବଭୂତେଷୁ ଚାତ୍ମାନଂ ନ ତତୋ ବିଜୁଗୁପ୍‌ସତେ ।।"
( ଈଶୋପନିଷଦ )

ଏହି ଐକ୍ୟବୋଧ ଆସିଲେ ମନୁଷ୍ୟର ଗର୍ବ, ଅହଂକାର, ଦର୍ପ ସବୁ ମିଳାଇଯାଏ ଏବଂ ସକଳ ପ୍ରକାର ଉଚ୍ଚ, ନୀଚ, ଭେଦଭାବ ଲୋପପାଏ । ଭୀମଭୋଇ ଏହିପରି ଏକ "ବସୁଧୈବ କୁଟୁମ୍ବକଂ" ଭାବରେ ଉଦ୍‌ବୁଦ୍ଧ ହୋଇ ଗାଇଉଠିଛନ୍ତି—

"କି ଅବା ବ୍ରାହ୍ମଣ କି ଅବା ଚଣ୍ଡାଳ ଅନ୍ୟ ନ ଧରିବ ଚିତ୍ତେ ।
ଜାତି ଗୋତ୍ର ହିଁ ନ ପଚ୍ଛରିବ ହାନି ଲଭି ତାରି ଯେତେ । ( ସ୍ତୁତିଚିନ୍ତାମଣି )

ଏହିପରି ଏକ ଅଦ୍ୱୟ ଆତ୍ମାକୁ ସର୍ବତ୍ର ଦର୍ଶନ କରିବାରେ ଅଭ୍ୟସ୍ତ ହୋଇଗଲେ ବ୍ରହ୍ମଜ୍ଞାନ ନିଶ୍ଚିତ ।

ଆତ୍ମଜ୍ଞାନଭାବ ସର୍ବଠାରେ ହେବ ସାର କର୍ମ ବୋଲିଇ ।
ଦେଖିବ ମହିମା ପ୍ରଭୁଗୁଣ ସୀମା ସ୍ୱାମୀ ସେବାରେ ଥିବଟି ଶୋଇ ।।"

ଏହି ଐକ୍ୟବୋଧ କ୍ରମେ ବିଶ୍ୱବୋଧରେ ପରିଣତ ହୁଏ । ସେତେବେଳେ ମନୁଷ୍ୟର ହୃଦୟ ଅପାରକରୁଣାରେ ଦ୍ରବୀଭୂତ ହୋଇଯାଏ ଏବଂ ସେ ଜୀବଜଗତର ସେବା ଓ ବିଶ୍ୱଭୁବନର କଲ୍ୟାଣ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଦିଏ । ଅଖିଳ ଜନତାର ଦୁଃଖ ଓ କଷ୍ଟରେ ସେ ଆପଣାକୁ ସାମିଲ କରିଦିଏ । ସାଧକ କବି ଭୀମଭୋଇ ଏହିପରି ଏକ ବିଶ୍ୱଚେତନାରେ ଉଦ୍‌ବୁଦ୍ଧ ହୋଇ ଗାଇଉଠିଛନ୍ତି—

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଜାଣି ଜାଣି କେବା ସହୁ ।
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

ସାଧକ କବି ଭୀମଭୋଇଙ୍କ ଏହି ଉକ୍ତି ପାଠକଲାବେଳେ ମହାମାନବ ଯେଶୁର ଦୂତ ଯିଶୁଖ୍ରୀଷ୍ଟଙ୍କର ଅମର ଉପଦେଶ ବାଣୀ ଆମର ସ୍ମୃତିପଥାରୂଢ଼ ହୁଏ । ସମାଜର ଦଳିତ, ବଞ୍ଚିତ, ନିପୀଡ଼ିତ ଜନତାର ଦୁଃଖ ଓ ଯନ୍ତ୍ରଣା ସହିତ ଆପଣାକୁ ସାମିଲ କରିଦେଇ ଭୀମଭୋଇ ଗାଇଉଠିଛନ୍ତି—

"ଏକା ଖଡ଼ଗରେ ଦଶପାଞ୍ଚ ମୁଣ୍ଡ ଛିଡ଼ଇ ଭାରତ ଯୁଦ୍ଧେ ।
ଆରେକ ଅଙ୍ଗକୁ ପାଦ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ ।"

ଏହାହିଁ ସାଧନାର ଚରମ ସୋପାନ । ଏହାହିଁ ସିଦ୍ଧି । ଭୀମଭୋଇ ତାଙ୍କ ନିଜ ଭାଷାରେ ଏହି ସିଦ୍ଧିର ସ୍ୱରୂପ ବର୍ଣ୍ଣନା କରିଅଛନ୍ତି ।

"ଆକାଶମଣ୍ଡଳୁ ପଦ ଓହରାଇ ରବିତଳେ ଯେଉଁ ଦେଲି ।
ବ୍ରହ୍ମଜ୍ଞାନ ବୀଜ ନିର୍ବେଦରୁ ଆଣି ବ୍ରହ୍ମାଣ୍ଡଯାକ ବୁଣିଲି ।।

ଅଜ୍ଞାନୀକୁ ଯେହୁ ଜ୍ଞାନ ବତାଇଲା ବ୍ରହ୍ମଜ୍ଞାନ ମୁଖେ କହି ।
କବିତ୍ୱ ହୋଇଣ ପଦ ବଖାଣିଲା ସାହାସ୍ର ଲିହିଲା ସେହି ।।”

ଭୀମଭୋଇ ବ୍ରହ୍ମଜ୍ଞାନର ଯେଉଁ ସୁଧା ପାନ କରିଥିଲେ ତାହା ଅଖିଳ ଜନତାର ହାତ ପାଆନ୍ତାରେ ପହଞ୍ଚାଇ ଦେବା ପାଇଁ ଉନ୍ମୁଖ ହୋଇଉଠିଛନ୍ତି । ସେ ମୁକ୍ତିଲାଭର ସବୁଠାରୁ ସୁଗମପନ୍ଥା ଅଲେଖ ମହିମାଧର୍ମ ଗ୍ରହଣ କରିବା ପାଇଁ ତାଙ୍କର ଶତଶତ ସ୍ତୁତି, ଜଣାଣ, ଭଜନ, ଚଉତିଶା ଓ କାବ୍ୟକବିତା ମାଧ୍ୟମରେ ଜନସାଧାରଣଙ୍କୁ କାତର ନିବେଦନ ଜଣାଇଛନ୍ତି ।

“ଏ କଳି ଯୁଗରେ ଅନ୍ୟ ନାମ ନାହିଁ ଅଲେଖମହିମା ସାର
ସକଳ ବିପତ୍ତି ହୃଦରୁ ନିବାରି ବେଳଥାଉଁ ଆଶ୍ରେ କର ।”

---

# ମହିମାଧର୍ମ ଓ ଦର୍ଶନ

ଭୀମଭୋଇ ମହିମାଧର୍ମର ଆଦି ପ୍ରବକ୍ତା । ମହିମାଧର୍ମର ପ୍ରତିଷ୍ଠାତା ପ୍ରଭୁଙ୍କଗୁରୁ ମହିମା ସ୍ୱାମୀ ନିଜର କୌଣସି ଗ୍ରନ୍ଥ ଛାଡ଼ିଯାଇନାହାନ୍ତି । ଆତ୍ମଯୋଗ ସାଧନା ଓ ଧର୍ମପ୍ରଚାର କାର୍ଯ୍ୟରେ ବ୍ୟସ୍ତରହି ସେ ଏଥିପାଇଁ ଅବସର ପାଇନଥିଲେ । ଶ୍ରୀକୃଷ୍ଣ ଓ ଚୈତନ୍ୟ ମଧ୍ୟ ନିଜନିଜର କୌଣସି ଗ୍ରନ୍ଥ ଛାଡ଼ିଯାଇନଥିଲେ । ଶ୍ରୀକୃଷ୍ଣଙ୍କର ଉପଦେଶାବଳୀକୁ ବ୍ୟାସଦେବ ଏବଂ ଶ୍ରୀଚୈତନ୍ୟଙ୍କର ଧର୍ମୋପଦେଶକୁ ରୂପ ସନାତନାଦି ଷଡ଼ଗୋସ୍ୱାମୀ ରୂପ ପ୍ରଦାନ କରିଥିଲେ । ମହିମାସ୍ୱାମୀ ଏହି କାର୍ଯ୍ୟ ପାଇଁ ଭୀମ ଭୋଇଙ୍କୁ ମନୋନୀତ କରିଥିଲେ । ମହିମାସ୍ୱାମୀଙ୍କ ଆଦେଶ ଅନୁଯାୟୀ ଭୀମଭୋଇ ତାଙ୍କର ସ୍ତୁତି, ଜଣାଣ, ଭଜନ, ଚଉତିଶା ଓ ଅନ୍ୟାନ୍ୟ କାବ୍ୟକବିତା ମାଧ୍ୟମରେ ମହିମାଧର୍ମତତ୍ତ୍ୱର ବ୍ୟାଖ୍ୟା କରି ଲୋକରେ ପ୍ରଚାର କରିଅଛନ୍ତି । ସେ ମହିମାଧର୍ମର ସର୍ବପ୍ରଥମ ଓ ସର୍ବ ପ୍ରଧାନ ବ୍ୟାଖ୍ୟାକାର । ଭୀମ ଭୋଇଙ୍କୁ ଛାଡ଼ି ମହିମାଧର୍ମର ବ୍ୟାଖ୍ୟା କରାଯାଇନପାରେ ।

ଭୀମଭୋଇଙ୍କ ମତରେ ମହିମାଧର୍ମ ଏକ ନିର୍ବେଦଧର୍ମ । ଏହା ବେଦକୁ ଧର୍ମତତ୍ତ୍ୱର ଏକ ପ୍ରମାଣ ଭାବରେ ଗ୍ରହଣ କରେ ନାହିଁ । ବେଦର ବର୍ଣ୍ଣ ବ୍ୟବସ୍ଥା ଏବଂ ଦେବଦେବୀ ଆରାଧନାକୁ ଏହି ଧର୍ମରେ ପ୍ରତ୍ୟାଖ୍ୟାନ କରାଯାଇଛି । ଭୀମଭୋଇ ତାହାଙ୍କ ରଚିତ ନିର୍ବେଦ ସାଧନ, ଶ୍ରୁତିନିଷେଧ ଗୀତା, ବ୍ରହ୍ମନିରୂପଣ ଗୀତା ଏବଂ ସ୍ତୁତିଚନ୍ତାମଣି ଆଦି ଗ୍ରନ୍ଥରେ ମହିମାଧର୍ମର ବିଶଦ ବ୍ୟାଖ୍ୟା କରିଛନ୍ତି ।

ମହିମାସ୍ୱାମୀଙ୍କୁ ଭୀମଭୋଇ ନିର୍ବେଦ ପୁରୁଷ ରୂପେ ଅଭିହିତ କରିଅଛନ୍ତି, କାରଣ ସେ ବେଦଗମ୍ୟ ନୁହନ୍ତି । ପ୍ରତ୍ୟେକ ଧର୍ମରେ ବିଶ୍ୱଭୁବନର ସ୍ରଷ୍ଟା, ପାଳକ ଓ ସଂହାରକର୍ତ୍ତା ରୂପରେ ଏକ ଚରମ ଓ ପରମ ତତ୍ତ୍ୱକୁ ସ୍ୱୀକାର କରାଯାଇଥାଏ । ତାହାଙ୍କୁ ଈଶ୍ୱର ବା ବ୍ରହ୍ମ ନାମରେ ନାମିତ କରାଯାଇଥାଏ ।

ଯେଉଁମାନେ ଈଶ୍ୱରସତ୍ତାରେ ବିଶ୍ୱାସ କରନ୍ତି ସେମାନଙ୍କୁ ଆସ୍ତିକ ଏବଂ ଯେଉଁମାନେ ବିଶ୍ୱାସ କରନ୍ତି ନାହିଁ ସେମାନଙ୍କୁ ନାସ୍ତିକ କୁହାଯାଏ ।

ଗୌତମ ବୁଦ୍ଧଙ୍କ ପରି କେତେକ ଅସ୍ତିକବାଦ ବା ନାସ୍ତିକବାଦ ମଧ୍ୟରୁ କୌଣସିଟିକୁ ଗ୍ରହଣ ନକରି ଈଶ୍ୱରସତ୍ତା ସମ୍ବନ୍ଧରେ ସମ୍ପୂର୍ଣ୍ଣ ନୀରବତା ଅବଲମ୍ବନ କରିଥାନ୍ତି । ଆସ୍ତିକ୍ୟ-ବାଦ ବା ସେଶ୍ୱରବାଦକୁ ଅଦ୍ୱୈତବାଦ, ଦ୍ୱୈତବାଦ ଓ ବହୁଦେବବାଦ ଇତ୍ୟାଦି

ନାନା ଶାଖାରେ ବିଭକ୍ତ କରାଯାଇଥାଏ । ଅଦ୍ୱୈତବାଦୀମାନେ ଏକ ଅଦ୍ୱିତୀୟ ବ୍ରହ୍ମସତ୍ତାରେ ବିଶ୍ୱାସ କରନ୍ତି । ସାଂଖ୍ୟବାଦୀମାନେ ପ୍ରକୃତି ଓ ପୁରୁଷ ଉଭୟର ସତ୍ୟତା ଓ ଚିରନ୍ତନତାକୁ ସ୍ୱୀକାର କରନ୍ତି । ବହୁଦେବବାଦୀମାନେ ବହୁଦେବର ଅସ୍ତିତ୍ୱରେ ବିଶ୍ୱାସ କରନ୍ତି ।

ମହିମା ଧର୍ମ ଏକେଶ୍ୱରବାଦୀ ଓ ଅଦ୍ୱୈତବାଦୀ ଧର୍ମ । ଏହି ଧର୍ମରେ ଏକ ଏବଂ ଅଦ୍ୱିତୀୟ ପରଂବ୍ରହ୍ମହିଁ ବିଶ୍ୱବ୍ରହ୍ମାଣ୍ଡର ଚରମ ଓ ପରମ ତତ୍ତ୍ୱ । ସେ ସ୍ୱୟଂପ୍ରକାଶ, ସ୍ୱୟମ୍ଭୂ ଏବଂ ସତ୍ୟ, ଜ୍ଞାନ ଓ ଆନନ୍ଦ ସ୍ୱରୂପ । ତାଙ୍କର ରୂପ ନାହିଁ, ନାମ ନାହିଁ, ଆକାର ନାହିଁ, ବର୍ଣ୍ଣ ନାହିଁ ବା ଗୁଣ ନାହିଁ । କୌଣସି ବିଶେଷଣଦ୍ୱାରା ତାଙ୍କୁ ବିଶେଷିତ କରାଯାଇନପାରେ । ତେଣୁ ସେ ଅରୂପ, ଅବର୍ଣ୍ଣ, ଅନାକ୍ଷର, ନିରାକାର, ନିର୍ଗୁଣ, ନିରଞ୍ଜନ, ନିର୍ବିକାର, ଅଜ ଅନିର୍ଦ୍ଦେଶ୍ୟ ଓ ନିର୍ବିକଳ୍ପ । ତାଙ୍କୁ କଳ୍ପନାରେ ଆଣିବା କିମ୍ବା ଲେଖା ବା ଶବ୍ଦଦ୍ୱାରା ପ୍ରକାଶ କରିବା ସମ୍ଭବପର ନୁହେଁ । ତେଣୁ ସେ ଅକଳ୍ପନା, ନିଃଶବ୍ଦ ଓ ଅଲେଖ । ସେ କେଉଁଥିରେ ଜଡ଼ିତ ହୁଅନ୍ତି ନାହିଁ । ସେ ହ୍ରାସ ବୃଦ୍ଧିର ଅତୀତ । ତାଙ୍କର ବିକଳ୍ପ ହୋଇ କିଛି ନାହିଁ । ତେଣୁ ସେ ନିର୍ଲେପ, ନିର୍ବିକାର ଓ ନିର୍ବିକଳ୍ପ ।

**ଶୂନ୍ୟବାଦ—**

ଉପରୋକ୍ତ ଶବ୍ଦଗୁଡ଼ିକ ନେତିବାଚକ । ତେଣୁ ଶୂନ୍ୟ ହେଉଛି ଏକମାତ୍ର ଶବ୍ଦ ଯାହାଦ୍ୱାରା ତାଙ୍କୁ ପ୍ରକାଶ କରାଯାଇପାରେ । ଭୀମଭୋଇ ତାଙ୍କୁ ଶୂନ୍ୟପୁରୁଷ, ଶୂନ୍ୟବ୍ରହ୍ମ, ଶୂନ୍ୟବାସୀ, ଶୂନ୍ୟଦେହୀ ରୂପରେ ଉଲ୍ଲେଖ କରିଛନ୍ତି ଏବଂ ତାଙ୍କର ବିହାର ସ୍ଥଳକୁ ଅବନାମଣ୍ଡଳ, ନିଶବ୍ଦମନ୍ଦିର, ଶୂନ୍ୟମନ୍ଦିର ଇତ୍ୟାଦି ନାମରେ ନାମିତ କରି ଅଛନ୍ତି ।

"କିଛି ନବଦିଶନ୍ତି ସ୍ୱାହିଁଲେ ହେ,
କଦାଚିତେ ନପଡ଼େ ଧଇଲେ ହେ ।
ମହାଶୂନ୍ୟମସ୍ତ କେ ଜାହିଁ କରିବ ଅସ୍ତ
ଛଡ଼ାଇ ସକଳଠାରୁ ହୋଇଛି ପଦ୍ଧିଲେ ହେ ।" (ଭଜନମାଳା)

ଓଡ଼ିଆ ପଞ୍ଚସଖା ସାହିତ୍ୟରେ ପରମ ତତ୍ତ୍ୱକୁ ଶୂନ୍ୟ ରୂପରେ ଅଭିହିତ କରାଯାଇଛି—
"ଶୂନ୍ୟପୁରୁଷ ଅଲଖେ ରହିଛି । ଶୂନ୍ୟ ପରେ ଲୀଳା କରୁଛି ।"
( ଶୂନ୍ୟ ସଂହିତା—ଅଚ୍ୟୁତାନନ୍ଦ )

ପରମତତ୍ତ୍ୱର ଅର୍ଥରେ ଶୂନ୍ୟ ଶବ୍ଦର ଏହି ପ୍ରୟୋଗ ଆମକୁ ବୌଦ୍ଧ ଦାର୍ଶନିକ ନାଗାର୍ଜ୍ଜୁନଙ୍କ ଶୂନ୍ୟବାଦୀ ଦର୍ଶନ ବିଷୟ ସ୍ମରଣ କରାଇଦିଏ । ଶୂନ୍ୟବାଦର ସର୍ବପ୍ରଥମ

ସୂଚନା ବୌଦ୍ଧ 'ପ୍ରଜ୍ଞାପାରମିତା' ସୂତ୍ରରୁ ମିଳିଥାଏ । ପ୍ରଜ୍ଞାପାରମିତା ଅର୍ଥ ହେଉଛି ଉଚ୍ଚତମ ଜ୍ଞାନ । ଏହି ଗ୍ରନ୍ଥ ଅନୁଯାୟୀ ଶୂନ୍ୟତା ବିଷୟକ ଜ୍ଞାନହିଁ ସର୍ବୋଚ୍ଚ ଜ୍ଞାନ । ଜଗତର ସକଳ ପଦାର୍ଥ ପ୍ରତିବିମ୍ବ ମାତ୍ର । ଏଗୁଡ଼ିକର କୌଣସି ବାସ୍ତବ ସତ୍ତା ନାହିଁ । ଶୂନ୍ୟବାଦର ସମଧିକ ବିକାଶ ଆମେ ଲକ୍ଷ୍ୟ କରୁ ବୌଦ୍ଧ ମାଧ୍ୟମିକ ଦର୍ଶନରେ । ହୀନଯାନ ବୌଦ୍ଧ ଦର୍ଶନ ବ୍ରାହ୍ମଣ୍ୟ, ଓ ଜୈନ ଦର୍ଶନରେ ଶୂନ୍ୟତା ସତ୍ତାର ଅଭାବ ବା ନିଷେଧକୁ ବୁଝାଏ । କିନ୍ତୁ ମହାଯାନୀ ମାଧ୍ୟମିକ ଦର୍ଶନ ଏହା ସତ୍ତାର ଅଭାବ ବା ନିଷେଧ ଅର୍ଥରେ ବ୍ୟବହୃତ ହୋଇନାହିଁ । ବ୍ୟାବହାରିକ ଜଗତର ପ୍ରତ୍ୟେକ ପଦାର୍ଥକୁ ଚାରିଗୋଟିରୁ ବିଚାର କରାଯାଇଥାଏ; ଯଥା – ଅସ୍ତି, ନାସ୍ତି, ଉଭୟ ଅସ୍ତି-ନାସ୍ତି ଏବଂ ଉଭୟ ଅସ୍ତି-ନାସ୍ତିର ଅଭାବ । କିନ୍ତୁ ପରମତତ୍ତ୍ୱ ଅବାଙ୍‌ମନସଗୋଚର, ସୁତରାଂ ଅନିର୍ବଚନୀୟ ହୋଇଥିବାରୁ ଚାରି ଗୋଟି କୋଟି ଦ୍ୱାରା ତାଙ୍କର ସ୍ୱରୂପ ନିରୂପଣ କରାଯିବା ସମ୍ଭବପର ନୁହେଁ । ତେଣୁ ତାଙ୍କର ଅନିର୍ବଚନୀୟତାକୁ ବୁଝାଇବା ପାଇଁ ଶୂନ୍ୟ ଶବ୍ଦର ପ୍ରୟୋଗ କରାଯାଇଛି ।

''ନସନ୍ ନାସନ୍ ନସଦସନ୍ନ ଚାପ୍ୟନୁଭୟାତ୍ମକମ୍
ଚତୁଷ୍କୋଟି ବିନିର୍ମୁକ୍ତଂ ତତ୍ତ୍ୱଂ ମାଧ୍ୟମିକ ବିଦୁଃ ।
(ମାଧ୍ୟମିକକାରିକା)

ପରମାର୍ଥ ଐକାନ୍ତିକ ସତ୍ ନୁହେଁ, ଐକାନ୍ତିକ ଅସତ୍ ବି ନୁହେଁ, ଏହା ସତ୍‌ଅସତ୍‌ର ମଧ୍ୟବର୍ତ୍ତୀ । ଏହା ଶୂନ୍ୟ । ଶୂନ୍ୟ ଅଭାବ ନୁହେଁ, କାରଣ ଅଭାବ ଭାବସାପେକ୍ଷ । ଶୂନ୍ୟ ପରମାର୍ଥସୂଚକ ହୋଇଥିବାରୁ ଏହା ନିରପେକ୍ଷ । ଶୂନ୍ୟ ସର୍ବଶ୍ରେଷ୍ଠ ଅପରୋକ୍ଷ ତତ୍ତ୍ୱ । ବିଶ୍ୱ ପ୍ରପଞ୍ଚଶୂନ୍ୟର ବିବର୍ତ୍ତ ମାତ୍ର । ଶୂନ୍ୟ ହିଁ ପରମସତ୍ତା । ପରମସତ୍ତା ସ୍ୱରୂପ ଅଜ୍ଞେୟ ଓ ଅନିର୍ବଚନୀୟ । ତେଣୁ ଶୂନ୍ୟ ଶବ୍ଦଦ୍ୱାରା ଏହା ସୂଚିତ ହୋଇଥାଏ । ଶୂନ୍ୟତାର ଶେଷ ନାହିଁ କି ରୂପ ନାହିଁ । ତାହା ସର୍ବବ୍ୟାପୀ, ନିର୍ଗୁଣ, ନିରାକାର, ନିର୍ଲେପ ଓ ଜ୍ୟୋତି-ସ୍ୱରୂପ । ଏହି ପରମାର୍ଥତତ୍ତ୍ୱର ଶୁଦ୍ଧ ନିଷ୍କ୍ରିୟ ଅବସ୍ଥା ହିଁ ମହାଶୂନ୍ୟ । ବୌଦ୍ଧ ଯୋଗାଚାରୀ ବିଜ୍ଞାନବାଦୀମାନଙ୍କ ମତରେ ଶୂନ୍ୟ ହେଉଛି ଅଭୂତ ପରିକଳ୍ପ ବା ଜ୍ଞାନସ୍ୱରୂପ । ଭାରତୀୟ ସାହିତ୍ୟରେ ଶୂନ୍ୟ ନୂଆକଥା ନୁହେଁ । ଋଗ୍‌ବେଦର ନାସଦୀୟ ସୂକ୍ତରେ ଶୂନ୍ୟର ଆଭାସ ସ୍ପଷ୍ଟ ।

''ନାସଦାସୀ ନ୍ନୋ ସଦାସୀତ୍ତଦାନୀଂ ନାସୀଦ୍ ରଜୋ ନୋ ବ୍ୟୋମାପରୋ ଯତ୍ ।
କିମାବରୀବଃ କୁହକସ୍ୟଶର୍ମନ୍ନମ୍ଭଃ କିମାସୀଦ୍ ଗହନଂ ଗମ୍ଭୀରମ୍ । ୧ ।
ନ ମୃତ୍ୟୁରାସୀଦମୃତଂ ନ ତର୍ହି ନ ରାତ୍ର୍ୟା ଅହ୍ନଆସୀତ୍ ପ୍ରକେତଃ ।
ଅନୀଦ ବାତଂ ସ୍ୱଧୟା ତଦେକଂ ତସ୍ମାଦ୍ଧାନ୍ୟନ୍ନ ପରଂ କିଂ ଚନାସ ।'' ୨ ।

ଏହାର ଅର୍ଥ ହେଲା—ଅନ୍ତରୀକ୍ଷାଦି ଲୋକସୃଷ୍ଟି ଆରମ୍ଭ ପୂର୍ବରୁ ଅସତ୍ ନ ଥିଲା କି ସତ୍ ନ ଥିଲା । ଆକାଶ ନ ଥିଲା । ତା ଉପରେ ଥିବା ବ୍ୟୋମ ବା

ମହାକାଶ ନ ଥିଲା । ସୃଷ୍ଟିଆଡ଼େ କଣ ଯୋଗି ରହିଥିଲା ? କେଉଁଠାରେ ଥିଲା ? କାହା ଆଶ୍ରୟରେ ଗହନ ଓ ଗମ୍ଭୀର ମନ କେଉଁଠାରେ ଥିଲା । କମ୍ବା ଅମୃତ ବା ଅବିନାଶୀ ଅକ୍ଷର ବ୍ରହ୍ମ ନ ଥିଲେ । ମୃତ୍ୟୁ ବା ନିତ୍ୟ ବିନାଶଶୀଳ କ୍ଷର ଜଗତ ନ ଥିଲା । ଅର୍ଥାତ୍ ଜୀବନର ସତ୍ତା ବା ତହିଁର ଲେପ ଉଭୟ ନଥିଲା । ପ୍ରାଣଶକ୍ତି ରୂପରେ କେବଳ ସତ୍ତାହିଁ ବିଦ୍ୟମାନ ଥିଲା । ଏକ ସତ୍ତା ନିଜ ଶକ୍ତିବଳରେ ସମସ୍ତଙ୍କୁ ଧାରଣ କରିପାରିବା ଭଳି ଶକ୍ତିରେ ଯୁକ୍ତଥିଲା । ଏହା ବ୍ୟତୀତ ଆଉ କିଛି ନଥିଲା । ଉପନିଷଦରେ ମଧ୍ୟ ଶୂନ୍ୟର ସଙ୍କେତ ମିଳେ ।

ଅସଦ୍ ବା ଇଦମଗ୍ର ଆସୀତ୍—(ବୃହଦାରଣ୍ୟକ)
ଅଶବ୍ଦସ୍ପର୍ଶଂ ଅରୂପମବ୍ୟୟମ୍—(କେନୋପନିଷଦ)
ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍—(ଶ୍ୱେତଶ୍ୱେତାର)
ନାନ୍ତଃପ୍ରଜ୍ଞଂ ନ ବହିଃପ୍ରଜ୍ଞଂ ନ ପ୍ରଜ୍ଞାନଂ ଘନଂଚନ
ନ ପ୍ରଜ୍ଞଂ ନା ପ୍ରଜ୍ଞଂ ଅଦୃଷ୍ଟମବ୍ୟବହାର୍ଯ୍ୟଂ ଗ୍ରାହ୍ୟମ୍‌ଲକ୍ଷଣମ ।
ଚିଚନ୍ତ୍ୟ ମଦ୍ୟପଦେ ଚିଚନ୍ତ୍ୟମଦ୍ୟଚିଚନ୍ତ୍ୟମଦ୍ୟପଚଦଣ୍ୟତ୍ୟାମେ ପ୍ରତ୍ୟୟସାରଂ
ପ୍ରପଞ୍ଚୋପଶମଂ ଶାନ୍ତଂ ଶିବମଦ୍ୱୈତଂ ଚତୁର୍ଥଂ ମନ୍ୟନ୍ତେ ।

ଉପନିଷଦର ଉପରୋକ୍ତ ବାଣୀ ସହିତ ଭୀମଭୋଇଙ୍କ ବାଣୀର ଯଥେଷ୍ଟ ସାମଞ୍ଜସ୍ୟ ଅଛି । ତେଣୁ କେବଳ ଶୂନ୍ୟ ଶବ୍ଦର ଉଲ୍ଲେଖ ଦେଖି ଭୀମଭୋଇଙ୍କୁ ପ୍ରଚ୍ଛନ୍ନ ବୌଦ୍ଧ ବୈଷ୍ଣବ ବୋଲି କହିବା ସମୀଚୀନ ନୁହେଁ । କାଳକ୍ରମେ ପରମାର୍ଥବୋଧକ ଏହି ଶୂନ୍ୟ ଶବ୍ଦ 'ପୂର୍ଣ୍ଣ' ଅର୍ଥରେ ବ୍ୟବହୃତ ହୋଇଅଛି—

"ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବାବଶିଷ୍ୟତେ ॥"

ପରଂବ୍ରହ୍ମ ଶୂନ୍ୟ ହୋଇ ମଧ୍ୟ ପୂର୍ଣ୍ଣ । ଶୂନ୍ୟ ଏବଂ ପୂର୍ଣ୍ଣ ଉଭୟ ପରମାର୍ଥବାଚକ । 'ବ୍ରହ୍ମନିରୂପଣ' ଗୀତାରେ ଭୀମଭୋଇ କହିଅଛନ୍ତି—

"ପୂର୍ଣ୍ଣାନନ୍ଦ ପୂର୍ଣ୍ଣବ୍ରହ୍ମ ଅଟନ୍ତି ସେହି ଚହ୍ଲା ।
ନୁହେଁ ଅଳ୍ପ ଅଧିକ କିଛି ନୁହଇ ଊଣା ।
ଅଖଣ୍ଡିତ ବ୍ରହ୍ମ ସେ ଗୋଟା ହୋଇଅଛି ।
କିଛି ଊଣା ନାହିଁ ତାର ପୂର୍ଣ୍ଣ ରହିଅଛି ॥
ଶୂନ୍ୟ ମହାଶୂନ୍ୟ ବୋଲି ତାହାକୁଟି କହି ।
ତାଙ୍କ ଉପରକୁ ଆଉ ବଡ଼ ନାହିଁ କେହି ॥"

ବୌଦ୍ଧ ବଜ୍ରଯାନ ଓ ସହଜଯାନ ଧର୍ମରେ ଚତୁର୍ବିଧ ଶୂନ୍ୟର ଉଲ୍ଲେଖ ଅଛି । ଯଥା— ମହାଶୂନ୍ୟ, ଶୂନ୍ୟ, ଅତିଶୂନ୍ୟ ଏବଂ ସର୍ବଶୂନ୍ୟ । ଭୀମଭୋଇ ସେହିପରି ତ୍ରିବିଧ ଶୂନ୍ୟ କଥା କହିଛନ୍ତି—ମହାଶୂନ୍ୟ, ଶୂନ୍ୟ ଓ ମୂଳଶୂନ୍ୟ । ମୂଳ ଶୂନ୍ୟରୁ ବିଶ୍ୱ ବ୍ରହ୍ମାଣ୍ଡ ଆବିର୍ଭୂତ ହୋଇଛି । ଶୂନ୍ୟ ଯେତେବେଳେ ସୃଷ୍ଟି ଅଭିମୁଖୀ ହୁଏ ତାକୁ ମୂଳଶୂନ ବୁଝାଯାଏ ।

**ମହିମା—**

ମହିମା ଧର୍ମରେ ଅଲେଖ ପରଂବ୍ରହ୍ମଙ୍କର ଅନ୍ୟନାମ ମହିମା । ମହିମା ଶବ୍ଦର ବ୍ୟୁତ୍ପତ୍ତି ମୂଳକ ଅର୍ଥ ହେଉଛି ଯାହା ସର୍ବଶ୍ରେଷ୍ଠ ବା ମହତ୍ତମ, ଯାହାଠାରୁ ବଡ଼ ହୋଇ ଆଉ କିଛି ନାହିଁ । ତେଣୁ ଅଲେଖ ପରଂବ୍ରହ୍ମହିଁ ମହିମା ।

"ଶରଣରକ୍ଷଣ ବାନା ମହିମାଙ୍କ ପିନା ।
ମହିମାଠାରୁ ବ୍ରହ୍ମାଣ୍ଡେ କେହି ନାହିଁ ଜଣା ॥
ଗତିମୁକତି ପଦକୁ ହୃଦେ ବହିଛନ୍ତି ।
ଶରଣ ବୋଇଲେ ଗର୍ଭଗତରେ ରଖନ୍ତି ॥" (ବ୍ର. ନି. ଗୀ)

ସ୍ଥଳବିଶେଷରେ 'ମହିମା' ଶବ୍ଦ ପରଂବ୍ରହ୍ମଙ୍କ ଶକ୍ତି ବା ମାହାତ୍ମ୍ୟ ଅର୍ଥରେ ମଧ୍ୟ ବ୍ୟବହୃତ ହୋଇଅଛି । ବୌଦ୍ଧଧର୍ମର ପଞ୍ଚଧ୍ୟାନୀ ବୁଦ୍ଧପରି ଭୀମଭୋଇ ଆଦିମହିମା, ମହାଶକ୍ତି ମହିମା, ଅନନ୍ତ ମହିମା, ପରମ ମହିମାର କଳ୍ପନା କରିଛନ୍ତି । ବ୍ରହ୍ମ ନିରୂପଣ ଗୀତାରେ ନିରାକାରଙ୍କ ପ୍ରଶ୍ନର ଉତ୍ତର ଛଳରେ ଏହା ବର୍ଣ୍ଣନା କରାଯାଇଛି ।

**ମହିମାସ୍ୱାମୀ :—**

ମହିମାଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି ଯେ ଅଲେଖ ପରଂବ୍ରହ୍ମ ଜଗତର କଲ୍ୟାଣ ପାଇଁ କଳିକଳୁଷରୁ ମାନବ ଜାତିକୁ ଉଦ୍ଧାର କରିବା ପାଇଁ ନରରୂପ ଧାରଣପୂର୍ବକ ଧରାଧାମରେ ଅବତୀର୍ଣ୍ଣ ହୋଇଥିଲେ ଏବଂ ଦିଗମ୍ବର ସନ୍ନ୍ୟାସୀ ବେଶ ଧାରଣ କରି ପୃଥିବୀ ଭ୍ରମଣପୂର୍ବକ ସତ୍ୟମହିମାଧର୍ମର ବାଣୀ ପ୍ରଚାର କରିଥିଲେ । ସେ ସ୍ୱୟଂ ପରଂବ୍ରହ୍ମ । ତେଣୁ ସେ ଅଯୋନିସମ୍ଭୂତ । ସେ ବହୁବର୍ଷ ଆତ୍ମଯୋଗ ସମାଧିରେ ନିମଗ୍ନ ରହିବା ପରେ ୧୮୭୨ ମସିହାରେ ସତ୍ୟମହିମା ଧର୍ମର ପ୍ରତିଷ୍ଠା କରିଥିଲେ ।

**ବୁଦ୍ଧାବତାର —**

ଭୀମଭୋଇ ତାହାଙ୍କ ରଚନାବଳୀର ବହୁସ୍ଥାନରେ ମହିମାସ୍ୱାମୀଙ୍କୁ ବୁଦ୍ଧ ଶରୀର, ବୁଦ୍ଧତନୁ ଓ ବୁଦ୍ଧାବତାର ବୋଲି ଉଲ୍ଲେଖ କରିଅଛନ୍ତି ।

"ବୁଦ୍ଧରୂପ ଧରି ଇଚ୍ଛାରେ ବିହରି ଏ ବ୍ରହ୍ମାଣ୍ଡେ ବୁଲୁଥାଏ ।"
"ବହୀବୁଦ୍ଧଶରୀର ଅସ୍ଥିବ୍ୟସ୍ଥ ନାହିଁନା ମୋହର ।"

"କଳିଯୁଗେ କର୍ତ୍ତା ଗଉମୁକ୍ତ ଦାତା ବୁଦ୍ଧ ରୂପେ ବଜେ କଲେ ।
ନିତ୍ୟ କର୍ମ କାଟି ଭକତମାନଙ୍କୁ ମହାନିତ୍ୟ ଧର୍ମ ଦେଲେ ॥"

କେହି କେହି ମହିମାଧର୍ମାବଲମ୍ବୀ ମତ ପ୍ରକାଶ କରନ୍ତି ଯେ ଭୀମଭୋଇ ବୁଦ୍ଧ ଶବ୍ଦ ଗୌତମ ବୁଦ୍ଧ ଅର୍ଥରେ ବ୍ୟବହାର କରିନାହାନ୍ତି । ତାଙ୍କ ଲେଖାମାନଙ୍କରେ ବୁଦ୍ଧ ଅର୍ଥ ଜ୍ଞାନୀ ପୁରୁଷ ଅର୍ଥରେ ବ୍ୟବହୃତ ହୋଇଅଛି । କିନ୍ତୁ ଏହା ସମୀଚୀନ ବୋଧହୁଏ ନାହିଁ । କାରଣ ଓଡ଼ିଶାରେ ବୌଦ୍ଧଧର୍ମର ଏକ ମହାନ୍ ପରମ୍ପରା ରହିଅଛି । ଶାରଳା ଦାସଙ୍କ ଠାରୁ ଆରମ୍ଭ କରି ପଞ୍ଚସଖାଙ୍କ ପର୍ଯ୍ୟନ୍ତ ସାଧୁସନ୍ଥ, କବି ଓ ଲେଖକମାନେ ଜଗନ୍ନାଥଙ୍କୁ ବୁଦ୍ଧାବତାର ରୂପେ ଗ୍ରହଣ କରିଅଛନ୍ତି । ଆଧୁନିକ ଯୁଗର ଜ୍ୟୋତିର୍ବିଜ୍ଞାନୀ ଓ ଭୀମଭୋଇଙ୍କ ସମସାମୟିକ ସାମନ୍ତ ଚନ୍ଦ୍ରଶେଖର ଜଗନ୍ନାଥଙ୍କୁ ଗୌତମ ବୁଦ୍ଧଙ୍କର ଅବତାର ଭାବରେ ଗ୍ରହଣ କରିଅଛନ୍ତି । ନୈଷଧ କାବ୍ୟରେ ବୁଦ୍ଧଙ୍କୁ ଅଦ୍ୱୈତବାଦୀ ଭାବରେ ଗ୍ରହଣ କରାଯାଇଛି । ଜୈନ କବି ହରିଶ୍ଚନ୍ଦ୍ର ସୁଗତ ବା ବୁଦ୍ଧଙ୍କୁ ଅଦ୍ୱୈତବାଦୀ ବୋଲି କହିଅଛନ୍ତି । ଶାନ୍ତିଦେବ ବୋଧିକୁ ଅଦ୍ୱୈତ ବୋଲି ଅଭିହିତ କରିଅଛନ୍ତି । ପୁଣି ବୁଦ୍ଧହିଁ ପ୍ରଥମେ ବେଦର ପ୍ରାମାଣିକତା ଅଗ୍ରାହ୍ୟ କରି ନିର୍ବେଦ ବୌଦ୍ଧଧର୍ମର ପ୍ରଚାର କରିଥିଲେ । ମହିମା ସ୍ୱାମୀ ଓ ବୁଦ୍ଧଙ୍କର ଜୀବନଧାରା ଓ ଉପଦେଶ ବାଣୀ ମଧ୍ୟରେ ବହୁ ସାମଞ୍ଜସ୍ୟ ରହିଅଛି । ତେଣୁ ଭୀମଭୋଇ ଉତ୍କଳର ପ୍ରାଚୀନ ପରମ୍ପରାର ଅନୁସରଣରେ ମହିମାସ୍ୱାମୀଙ୍କୁ ବୁଦ୍ଧଙ୍କର ଅବତାର ବୋଲି କହିଥିବା ଅଧିକ ସମୀଚୀନ ବୋଧହୁଏ ।

## ଧର୍ମପୁରୁଷ—

ଭୀମଭୋଇ କେତେକ ସ୍ଥଳରେ ମହିମାସ୍ୱାମୀଙ୍କୁ ଧର୍ମପୁରୁଷ ନାମରେ ଅଭିହିତ କରି-ଅଛନ୍ତି । ଯୁଧିଷ୍ଠିରଙ୍କୁ ଧର୍ମପୁତ୍ର, ଯମଙ୍କୁ ଧର୍ମରାଜ ଏବଂ ସୂର୍ଯ୍ୟଙ୍କୁ ଧର୍ମଦେବତା ବୋଲି କୁହାଯାଏ, କାରଣ ଏମାନେ ନିଜର ଧର୍ମ ପାଳନ କରନ୍ତି । ଧର୍ମ ଅର୍ଥ ଋତ ବା ଶାଶ୍ୱତ ନିୟମ । ଚନ୍ଦ୍ର, ସୂର୍ଯ୍ୟ, ପୃଥିବୀ, ପବନ, ଆକାଶ, ଜଳ ଓ ଅଗ୍ନି ଅବିଚଳିତ ଭାବରେ ସେମାନଙ୍କର ଧର୍ମ ପାଳନ କରୁଛନ୍ତି । ଧର୍ମ ବା ଋତର ନିୟାମକ ସ୍ୱୟଂ ପରଂବ୍ରହ୍ମ । ତେଣୁ ପରଂବ୍ରହ୍ମହିଁ ଯଥାର୍ଥରେ ଧର୍ମପୁରୁଷ । ଏହା ସହିତ ବୌଦ୍ଧ ଧର୍ମ ନିକାୟ ବା ବଙ୍ଗଳାର ଧର୍ମପୂଜାର କୌଣସି ସମ୍ପର୍କ ନାହିଁ ।

## ଅବତାରୀ ଅବତାର—

ଭୀମଭୋଇଙ୍କ ମତରେ ଅଲେଖ ପରବ୍ରହ୍ମହିଁ ସକଳ ଅବତାରର ଉତ୍ସ । ମତ୍ସ୍ୟ କଚ୍ଛପାଦି ଦଶାବତାର, ରାମକୃଷ୍ଣ, ଜଗନ୍ନାଥ ସମସ୍ତେ ଅଲେଖ ପରଂବ୍ରହ୍ମଙ୍କର ଅବତାର । ସେ କେବଳ ଅବତାରୀ ।

## ଓଁକାର—

ଓଁକାରକୁ ପ୍ରଣବ, ଶବ୍ଦବ୍ରହ୍ମ ଓ ଏକାକ୍ଷର ବୋଲି ମଧ୍ୟ କୁହାଯାଏ । ଓଁକାର ବିଶ୍ୱ ସୃଷ୍ଟିର ମୂଳବସ୍ତୁ । କାରଣ ବିଶ୍ୱ ସୃଷ୍ଟି ବୋଇଲେ ନାମ ଓ ରୂପକୁ ବୁଝାଏ । ରୂପ ନାମୀ ଏବଂ ଶବ୍ଦ ନାମ । ଶବ୍ଦ ବିନା ବିଶ୍ୱ ସୃଷ୍ଟିର ଭାବନା ଓ ପ୍ରକାଶ ସମ୍ଭବପର ନୁହେଁ । ଏହି ଦୃଷ୍ଟିରୁ ବିଚାର କଲେ ବିଶ୍ୱସୃଷ୍ଟି ମନର ବିଳାସ ମାତ୍ର । ମନୁଷ୍ୟ ମନ ବାହାରେ ବିଶ୍ୱ ସୃଷ୍ଟିର କୌଣସି ଅର୍ଥ ନାହିଁ । ଶବ୍ଦର ମୂଳ ଓଁକାର । ତେଣୁ ଓଁକାରକୁ ଶବ୍ଦବ୍ରହ୍ମ ବୋଲି କୁହାଯାଏ । ଓଁକାର ପରଂବ୍ରହ୍ମ ପ୍ରାପ୍ତିର ଉପାୟ, କିନ୍ତୁ ପରଂବ୍ରହ୍ମ ନୁହେଁ । ପରଂବ୍ରହ୍ମ ବା ପରମପଦ ଓଁକାରର ଊର୍ଦ୍ଧ୍ୱରେ । ମାଣ୍ଡୂକ୍ୟ ଉପନିଷଦରେ ଓଁକାରର ତିନିଗୋଟି ମାତ୍ରା ଅ, ଉ, ମ ମନର ତିନିଗୋଟି ଅବସ୍ଥା ଯଥା ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ସହିତ ତୁଳନା କରାଯାଇଛି । ଜାଗ୍ରତ ହେଉଛି ପଞ୍ଚେନ୍ଦ୍ରିୟର ସଚେତନ ଅବସ୍ଥା । ଏହାର ଅଧିଷ୍ଠାତା ବିଶ୍ୱ ବା ବୈଶ୍ୱାନର । ଏହାର ପ୍ରତ୍ୟେକ ଅକ୍ଷର ହେଉଛି 'ଅ' । ସ୍ୱପ୍ନ ଅବସ୍ଥାର ଅଧିଷ୍ଠାତା ହେଉଛନ୍ତି ତୈଜସ । ଏହାର ପ୍ରତ୍ୟେକ ଅକ୍ଷର ହେଉଛି 'ଉ' । ସୁଷୁପ୍ତି ଅବସ୍ଥାରେ ସମସ୍ତ ବାହ୍ୟଜ୍ଞାନ ଅତିକ୍ରାନ୍ତ ହୋଇ ଆପଣା ଚେତନାରେ ମଗ୍ନ ଥାଏ । ଏହାର ଅଧିଷ୍ଠାତା ପ୍ରାଜ୍ଞ ଏବଂ ପ୍ରତୀକ ଅକ୍ଷର 'ମ' । ସାଧନା ଓ ଧ୍ୟାନଦ୍ୱାରା ସାଧକ ଏହି ତିନି ଅବସ୍ଥାକୁ ଅତିକ୍ରମ କରି ପରଂବ୍ରହ୍ମରେ ଲୀନ ହୁଏ । ଏହାକୁ ଚତୁର୍ଥ ବା ତୁରୀୟ ଅବସ୍ଥା କହନ୍ତି । ସାଧକ ତୁରୀୟ ଅବସ୍ଥାରେ ବ୍ରହ୍ମ ପ୍ରାପ୍ତ ହୁଏ । ଏଣୁ ଓଁକାର ବ୍ରହ୍ମପ୍ରାପ୍ତିର ଉପାୟ । 'ମୁଣ୍ଡକ' ଉପନିଷଦରେ ମଧ୍ୟ ପ୍ରଣବ ରୂପ ଧନୁଦ୍ୱାରା ପରମାତ୍ମା ରୂପ ଲକ୍ଷ୍ୟଭେଦ କରିବାକୁ କୁହାଯାଇଛି ।

"ପ୍ରଣବଧନୁଃ ଶରୋହ୍ୟାତ୍ମା ବ୍ରହ୍ମତଲ୍ଲକ୍ଷମୁଚ୍ୟତେ ।
ଅପ୍ରମତ୍ତେନ ବେଦ୍ଧବ୍ୟଂ ଶରବତ୍ତନ୍ମୟୋ ଭବେତ୍ ॥"

କିନ୍ତୁ ମହିମା ଧର୍ମରେ ଓଁକାର ଜପର ବିଧି ନାହିଁ । ଏଥିରେ କେବଳ ଏକ ଅଦ୍ୱୟ ପରଂବ୍ରହ୍ମଙ୍କର ସ୍ମରଣ ଭଜନ କରାଯାଇଥାଏ । କାରଣ ପରଂବ୍ରହ୍ମ ଓଁକାରର ଅଗମ୍ୟ ।

"ଅନ୍ତର୍ଯାମୀ ପଦକୁ ଅଙ୍ଗରେ ଛନ୍ତି ବହି ଉତ୍ପତ୍ତି ସ୍ଥିତି ପ୍ରଳୟ ଯେ କରଇ ।"
ଓଁକାର ଅର୍ଦ୍ଧମାତ୍ରା ଅକ୍ଷର ତହିଁକି ନ ଗମଇ ହେ ॥ (ଭ. ମା)

ଭୀମଭୋଇ ତାହାଙ୍କ ରଚନାବଳୀରେ ଅନେକ ସ୍ଥାନରେ ଓଁକାର ବା ଏକାକ୍ଷର ବ୍ରହ୍ମ କଥା କହିଅଛନ୍ତି—"ଓଁକାର ପରମପଦୁଁ ପିଅ ମକରନ୍ଦ ମଧୁ ।
ଭଣେ ଭୀମ ଅରକ୍ଷିତ ଅତି ସୁସ୍ୱାଦୁ ହେ ।"

ଏହାର ଅର୍ଥ ହେଉଛି ଓଁକାରର ଊର୍ଦ୍ଧ୍ୱରେ ଅବସ୍ଥିତ ତୁରୀୟାନନ୍ଦ ପରଂବ୍ରହ୍ମଙ୍କର ପାଦ ପଦ୍ମର ନିଃସୃତ ସୁଧା ପାନ କର । ଏହି କଥାକୁ ଆହୁରି ସ୍ପଷ୍ଟ କରିଦେଇ ଭୀମଭୋଇ କହିଅଛନ୍ତି —

"ଅବନା ଅଣକ୍ଷରୁ ଦୁର୍ଗମ ହୋଇଲା ଜାତ ।
ଦୁର୍ଗମରୁ ଜନ୍ମିଲା ଅନାମ ଅବ୍ୟକତ ।।
ଅନାମରୁ ଜନ୍ମିଲା ନିଗମ ଭେଦ ତତ୍ୱ ।
ନିଗମରୁ ଜନ୍ମିଲା ସ୍ୱାହା ଶବ୍ଦ ସମ୍ଭୂତ ।।
ଶବ୍ଦରୁ ଜନ୍ମିଲା ଓଁକାର ସାରସ୍ୱତ ।।" (ଭଜନମାଳା)

ଏଥିରୁ ପ୍ରତିପାଦିତ ହୁଏ ଯେ ଅଲେଖ ପରଂବ୍ରହ୍ମ ଓଁକାରର ବହୁ ଊର୍ଦ୍ଧ୍ୱରେ ଅବସ୍ଥିତ । ଓଁକାର ଜପ ଦ୍ୱାରା ତାଙ୍କୁ ପାଇବା ସମ୍ଭବପର ନୁହେଁ ।

**ଜୀବ-ପରମ —**

ଜୀବ କହିଲେ ଜୀବାତ୍ମା ଓ ପରମ କହିଲେ ପରମାତ୍ମାଙ୍କୁ ବୁଝାଏ । ଏ ଦୁହେଁ ଯଥାର୍ଥରେ ଏକ ଏବଂ ଅଭିନ୍ନ । କିନ୍ତୁ ଜୀବ ହେଉଛି ଭୋକ୍ତା ଏବଂ ପରମ ହେଉଛନ୍ତି ସାକ୍ଷୀ ମାତ୍ର । ଏହି କଥାକୁ ରୂପକ ଛଳରେ ବୁଝାଇ ମୁଣ୍ଡକ ଉପନିଷଦରେ କୁହାଯାଇଛି ଯେ ଦେହ ରୂପକ ବୃକ୍ଷରେ ଦୁଇଟି ପକ୍ଷୀ ବାସ କରୁଅଛନ୍ତି । ସେଥିମଧ୍ୟରୁ ଗୋଟିଏ ପକ୍ଷୀ ସୁସ୍ୱାଦୁ ଫଳ ଭକ୍ଷଣ କରୁଅଛି, କିନ୍ତୁ ଅନ୍ୟଟି ସାକ୍ଷୀ ରୂପରେ ଅନାହାରୀ ହୋଇ ରହିଅଛି । ଏହି ଦୁଇ ପକ୍ଷୀ ମଧ୍ୟରୁ ପ୍ରଥମ ପକ୍ଷୀଟି ଜୀବାତ୍ମା ଓ ଦ୍ୱିତୀୟ ପକ୍ଷୀଟି ପରମାତ୍ମା । ଭୀମଭୋଇ 'ଆଦି ଅନ୍ତ' ଗୀତାରେ ଜୀବକୁ ଯୁବତୀ ରୂପରେ କଳ୍ପନା କରିଅଛନ୍ତି, କାରଣ ସେ ଭୋକ୍ତା—

"ଯୁବତୀ ବୋଲନ୍ତେ ଜୀବ ଭୋଗ ବିଳାସିନୀ ।
ପରମ ସାକ୍ଷୀ ରୂପରେ ଅଲଗା ରହିଲା ।"(ବ୍ର.ନି.ଗୀ.)

ଜୀବ ପରମ ଏକ ଓ ଅଭିନ୍ନ ହେଲେ ହେଁ ଜୀବ ଦେହକୁ ଆତ୍ମା ବୋଲି ମନେ କରି ମୋହରେ ପଡ଼େ । ମୋହଗ୍ରସ୍ତ ଜୀବ ପରମାତ୍ମାଙ୍କୁ ବିସ୍ମୃତ ହୁଏ । ଏ ପ୍ରସଙ୍ଗରେ ଭୀମଭୋଇ କହିଅଛନ୍ତି—

"ପରମକୁ ଜୀବ ଖୋଜୁଅଛି ନିରନ୍ତରେ ।
ଚିହ୍ନିପାରିଲେ ସେ ଦୁହେଁଛନ୍ତି ଏକାଠାରେ ।।
ଯେସନେ ଜିହ୍ୱାର ଅଗ୍ର ଓଷ୍ଠକୁ ନ ପାଏ ।
ସେହି ରୂପେ ପରମଟି ଜୀବ ପାଶେ ଥାଏ ।।
× × ×
ବେନିଜନେ ଭିନ୍ନାଭିନ୍ନ ନାହିଁ କିଛି,
ଜୀବ ବସି ପରମକୁ ପଚ୍ଛୁରୁଛି ।।" (ବ୍ର.ନି.ଗୀ.)

ଜ୍ଞାନ ଓ ଭକ୍ତି ଦ୍ୱାରା ଚିତ୍ତ ବ୍ରହ୍ମରେ ନିମଜ୍ଜିତ ହେଲେ ଏହି ଭେଦ ଲୋପପାଏ ଏବଂ ଜୀବ ବ୍ରହ୍ମ ପାଲଟି ଯାଏ । ଏହି ଜୀବ ବ୍ରହ୍ମ ଐକ୍ୟକୁ ବେଦାନ୍ତର ଚାରିଗୋଟି ମହା-

ବାକ୍ୟ ଦ୍ୱାରା ପ୍ରକାଶ କରାଯାଇଛି—"ସର୍ବମିଦଂ ଖଳୁ ବ୍ରହ୍ମ", "ତତ୍ତ୍ୱମସି", "ଅହଂ ବ୍ରହ୍ମୋସ୍ମି", "ଅୟମାତ୍ମା ବ୍ରହ୍ମ" । ଏହା ମୁକ୍ତିଲାଭପରର ଅବସ୍ଥା । ମହିମାଧର୍ମାନୁଯାୟୀ ମୁକ୍ତିଲାଭ ପୂର୍ବରୁ ବ୍ରହ୍ମ ଓ ଜୀବର ଯେଉଁ ସମ୍ବନ୍ଧ ତାହା ହେଉଛି ସେବ୍ୟ-ସେବକ ଏବଂ ଉପାସ୍ୟ-ଉପାସକର ସମ୍ବନ୍ଧ ।

"ଗୁରୁ ତ ସକଳ ଅନ୍ତରଯାମିଣୀ ଆତଙ୍କ ଫେଡ଼ନ ବାନା ।
ଆରତତାରଣ ନାଥ ବୋଲି ହୃଦେ କରୁଛି ଭାବନା ।।
ଦୁଃଖୀଜନ ବନ୍ଧୁ ଦୁଃଖୀର ସଖାଳି ଅରକ୍ଷକ ଗଣ୍ଠିଧନ ।
ଖାଇଲେ ବଇଲେ ନ ସରଇ ପରା ଦରିଦ୍ର ଜୀବ ଜୀବନ ।
ସାର ଅବତାର ବ୍ରହ୍ମାଣ୍ଡଠାରୁର ସକଳ ଜୀବ କରତା ।
ପିଣ୍ଡ ପ୍ରାଣ ସଞ୍ଚ ରଖିଛ ବଞ୍ଚାଇ ପ୍ରଭୁ ଯିନା ପିତାମାତା ।
ପ୍ରଭୁ ବର୍ଗବନ୍ଧୁ ପ୍ରଭୁ ଇଷ୍ଟଦାତା ପ୍ରଭୁ ଯିନା ସାହା ବାହା ।
ସ୍ୱାମୀ ବିନୁ ସଙ୍କଟ ଦୁର୍ଗତି ଆନ କେ ଫେଡ଼ିବ ଏହା ।।" (ସ୍ତୁ.ଚ.ମ.)

## ସୃଷ୍ଟିତତ୍ତ୍ୱ —

ସୃଷ୍ଟିତତ୍ତ୍ୱ ପ୍ରତ୍ୟେକ ଧର୍ମର ଏକ ଅପରିହାର୍ଯ୍ୟ ଅଙ୍ଗ । ବିଭିନ୍ନ ଦାର୍ଶନିକ ବିଭିନ୍ନ ଦୃଷ୍ଟିକୋଣରୁ ସୃଷ୍ଟିତତ୍ତ୍ୱର ବ୍ୟାଖ୍ୟା କରିଥାଆନ୍ତି । ବୈଶେଷିକ ଦର୍ଶନ ଅନୁଯାୟୀ ବିଶ୍ୱଭୁବନ ଅଣୁପରମାଣୁର ସଙ୍ଘାତ ମାତ୍ର । ସାଂଖ୍ୟ ଏକ ଦ୍ୱୈତବାଦୀ ଦର୍ଶନ । ଏହି ଦର୍ଶନ ଅନୁଯାୟୀ ପ୍ରକୃତି ପୁରୁଷର ସଂଯୋଗରୁ ସୃଷ୍ଟିର ଉଦ୍ଭବ ହୋଇଅଛି । ଶଙ୍କରଙ୍କ ମତରେ ପରଂବ୍ରହ୍ମ ହିଁ ଏକମାତ୍ର ସତ୍ୟ । ଜଗତ୍ ମିଥ୍ୟା; ଏହା ରଜ୍ଜୁରେ ସର୍ପ ଭ୍ରମ ବା ଶୁକ୍ତିରେ ରଜତ ଭ୍ରମ ପରି ଅଳୀକ । ଜ୍ଞାନର ଉଦୟ ହେଲେ ଏହା ବିଦୂରିତ ହୁଏ । ଭୀମଭୋଇଙ୍କ ମତରେ ବିଶ୍ୱ ସୃଷ୍ଟି ମିଥ୍ୟା ନୁହେଁ, ସତ୍ୟ । ଅନାମ ବା ଅଲେଖ ପରଂବ୍ରହ୍ମଙ୍କଠାରୁ ବିଶ୍ୱସୃଷ୍ଟିର ଉଦ୍ଭବ । ସୃଷ୍ଟି ପୂର୍ବରୁ ଅନ୍ଧାର-ଆଲୋକ, ଦିବସ-ରଜନୀ ଚନ୍ଦ୍ର-ସୂର୍ଯ୍ୟ, ଗ୍ରୀଷ୍ମ-ବର୍ଷା, ଜୀବଜନ୍ତୁ, ତରୁଲତା, କୀଟପତଙ୍ଗ, ବ୍ରହ୍ମା-ବିଷ୍ଣୁ-ମହେଶ୍ୱର, ଛପନ କୋଟି ଜୀବ, ନବଖଣ୍ଡ ମେଦନୀ, ନବଲକ୍ଷତାରା କିଛି ନ ଥିଲା । ସର୍ବତ୍ର ଏକ ନିଃଶବ୍ଦ ମହାଶୂନ୍ୟ ବିରାଜମାନ କରୁଥିଲା । ଏହି ମହାଶୂନ୍ୟ ହିଁ ଅନାମ ବା ଅଲେଖ ପରଂବ୍ରହ୍ମଙ୍କର ଅଖଣ୍ଡ ସତ୍ତା । ସତ୍ତା ରୂପରେ ସେ କେବଳ ବିଦ୍ୟମାନ ଥିଲେ, ଆଉ କିଛି ନଥିଲା । ଏହାପରେ ପରଂବ୍ରହ୍ମଙ୍କର ଅଦ୍ଭୁତ ଶକ୍ତି ମହିମାରୁ ସୃଷ୍ଟିର ସଙ୍କେତ ଜ୍ୟୋତି ପ୍ରକାଶ ପାଇଲା ।

"ଅନାମ ଶକ୍ତିରୁ ଜନମ ହୋଇଲା ଶୂନ୍ୟ ।
ଶୂନ୍ୟ ସତ୍ତ୍ୱରୁ ଆକାର ହୋଇଲା ବାହାର ହୋଇଲା ବର୍ଣ୍ଣ" । (ସ୍ତୁ.ଚ.)

ତାପରେ ମହିମା ଗର୍ଭରୁ ପଞ୍ଚଭୂତ, ନବଖଣ୍ଡ ମେଦିନୀ, ଚଉଦଭୁବନ, ଏକୋଇଶ ପୁର, ସାତସମୁଦ୍ର, ନବଲକ୍ଷ ତାରା, ସୂର୍ଯ୍ୟ, ଚନ୍ଦ୍ର, ସ୍ଥାବରଜଙ୍ଗମ, କୀଟପତଙ୍ଗ, ଭଲ ମନ୍ଦ, ପାପ ପୁଣ୍ୟ, ଦୟା କ୍ଷମା, ଜ୍ଞାନ ବୁଦ୍ଧି, ସତ୍ୟ ମିଥ୍ୟା, ବିଦ୍ୟା ଅବିଦ୍ୟା, ଜନ୍ମ ମୃତ୍ୟୁ, ସଂସହାର-କାରୀ କାଳ ଇତ୍ୟାଦି ଯାହା କିଛି ବିଶ୍ୱସୃଷ୍ଟିରେ ଅଛି ଜନ୍ମଲାଭକଲା । ତେଣୁ ଏକ ଅଦ୍ୱିତୀୟ ପରଂବ୍ରହ୍ମହିଁ ସମଗ୍ର ବିଶ୍ୱଭୁବନର ସ୍ରଷ୍ଟା ।

"ଅଶେଷ ରଚନା ଗୁରୁ କରିଛନ୍ତି ଆଦି ଜଣେ କେ ନ ରହି ।
ସକଳ ପଦାର୍ଥ ବ୍ରହ୍ମାଣ୍ଡ ଭିତରେ ଭିଆଇଣ ଦେଲେ ସହି ॥"

ଭୀମଭୋଇଙ୍କ ଦ୍ୱାରା ପ୍ରଦତ୍ତ ଏହି ସୃଷ୍ଟିତତ୍ତ୍ୱ ଉପନିଷଦଦ୍ୱାରା ସମର୍ଥିତ । "ଯତଃ ଇମାନି ଭୂତାନି ଯାୟନ୍ତେ ଯେନ ଜାତାନିଜୀବନ୍ତି ଯଂ ପ୍ରୟନ୍ତି ଅଭିସବିଶନ୍ତି ।" ବିଶ୍ୱଭୁବନ ସୃଷ୍ଟିକରି ଭଗବାନ୍ ତହିଁରେ ବିହାର କଲେ । ଏ ବିଶ୍ୱସୃଷ୍ଟିରେ ସେ ସର୍ବତ୍ର ପୁରି ରହିଛନ୍ତି । ତାଙ୍କର ଆଦେଶରେ ବିଶ୍ୱସୃଷ୍ଟି ପରିଚାଳିତ ହେଉଛି । ପରଂବ୍ରହ୍ମ ବିଶ୍ୱବିହାରୀ ହୋଇ ମଧ୍ୟ ବିଶ୍ୱାତୀତ ।

"ସର୍ବଠାରୁ ସାର ବ୍ରହ୍ମ ଅଲଗା ରହିଛି । ଏକୋଇଶ ବ୍ରହ୍ମାଣ୍ଡରୁ ଛଡ଼ାଇ ହୋଇଛି ।"

## ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ—

ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ମହିମାଧର୍ମତତ୍ତ୍ୱର ଅନ୍ୟ ଏକ ବିଶେଷତ୍ୱ । ଭୀମଭୋଇଙ୍କର ବିବିଧ ରଚନାରେ ଏହି ତତ୍ତ୍ୱର ବିଶଦ ବର୍ଣ୍ଣନା ଦୃଷ୍ଟ ହୁଏ । ଏହାର ତାତ୍ପର୍ଯ୍ୟ ହେଉଛି ପିଣ୍ଡହିଁ ବ୍ରହ୍ମାଣ୍ଡ । ବିଶ୍ୱ ସୃଷ୍ଟି ଯେପରି ପ୍ରଭୁଙ୍କ ନିବାସସ୍ଥଳ ,ପିଣ୍ଡ ରୂପ ବ୍ରହ୍ମାଣ୍ଡ ମଧ୍ୟ ସେହିପରି ଶ୍ରୀହରିଙ୍କ ବାସସ୍ଥଳ । ବ୍ରହ୍ମାଣ୍ଡରେ ଯାହା ଯାହା ଅଛି ସେ ସବୁ ପିଣ୍ଡରେ ମଧ୍ୟ ଅଛି । ଭୀମଭୋଇ କହିଅଛନ୍ତି ଯେ ଅଲେଖ ପରଂବ୍ରହ୍ମ ଏହି ପିଣ୍ଡରେ ବାସ କରୁଅଛନ୍ତି । ଚଉଦଭୁବନ, ନବଖଣ୍ଡ ମେଦିନୀ, ଏକୋଇଶ ପୁର ସବୁ ଏହି ଶରୀର ମଧ୍ୟରେ ଅବସ୍ଥିତ । ସେ କହିଅଛନ୍ତି—

"ତହିଁ ଉପରେ ଅଛି ବୈକୁଣ୍ଠ ସନ୍ଧି । ମୂଳ ଶୂନ୍ୟେ ନିରାକାର ରହିଅଛନ୍ତି ॥
ତହିଁ ଏକୋଇଶପୁର ତଳକୁ ପୃଥ୍ୱୀ । ଡାହାଣ କାନ୍ଧ ଶ୍ରୀରାମ ଜଗନ୍ନାଥ,
ପୂର୍ବରେ ଶ୍ରୀକୃଷ୍ଣଚନ୍ଦ୍ର ପଛଭାଗେ ଅନନ୍ତ । କୁଢ଼କୁଢ଼ ପଢ଼ିଛି ସାହାସ୍ର ଗ୍ରନ୍ଥଗୀତ ॥"(ଭ.ମ.)

'ଆଦିଅନ୍ତ' ଗୀତାରେ ଭୀମଭୋଇ ଦର୍ଶାଇଛନ୍ତି ଯେ ରାମାୟଣ, ମହାଭାରତ, ହରିବଂଶ, ଭାଗବତ, ଯଦୁରାଜା, ଅବଧୂତ, ଜନକ, ଧ୍ରୁବ, ମାର୍କଣ୍ଡ ସବୁ ଏହି ଶରୀର ମଧ୍ୟରେ ଅବସ୍ଥିତ । ଶରୀର ହିଁ ବ୍ରହ୍ମାଣ୍ଡ । ଭୀମଭୋଇ ଲୋକମାନଙ୍କୁ ଆକୁଳ ନିବେଦନ ଜଣାଇଛନ୍ତି ସେମାନେ ବୃଥାରେ ରାଧା-କୃଷ୍ଣ, ଶିବ-ପାର୍ବତୀ ଓ ବିଷ୍ଣୁ-ଲକ୍ଷ୍ମୀଙ୍କୁ ପୂଜା ନକରି ଦେହ ମଧ୍ୟସ୍ଥ ଅଲେଖ ପରଂବ୍ରହ୍ମଙ୍କୁ ଭଜନ କରନ୍ତୁ । ତାହାହେଲେ ସେମାନେ ଅକ୍ଳେଶରେ ଭବସାଗର ପାରି ହେବାକୁ ସମର୍ଥହେବେ । ପିଣ୍ଡ ବ୍ରହ୍ମାଣ୍ଡ ଚିନ୍ତାଧାରାର ମୂଳ ଉପନିଷଦରେ ନିହିତ । ସେଥିରେ ଉଲ୍ଲେଖ ଅଛି ଯେ ଏହି ଦେହ ନବଦ୍ୱାରଯୁକ୍ତ ଏକ ପୁର । ତହିଁରେ

ଆତ୍ମା ବା ପରଂବ୍ରହ୍ମ ବାସ କରୁଅଛନ୍ତି । ବୌଦ୍ଧ ତନ୍ତ୍ରରେ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱର ସମଧିକ ବିକାଶ ଦୃଷ୍ଟ ହୁଏ । ଏହି ଚନ୍ତାଧାରାକୁ ପୁଷ୍ପିତ ଓ ପଲ୍ଲବିତ କରି ପଞ୍ଚସଖାଙ୍କ ସାହିତ୍ୟରେ ବର୍ଣ୍ଣନା କରାଯାଇଛି । ଶ୍ରୀମନ୍ତେଇ ପଞ୍ଚସଖା ସାହିତ୍ୟର ଅନୁସରଣରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବିକାଶ ଘଟାଇଥିବା ସମ୍ଭବ ।

**ମହାନିତ୍ୟପୁର—**

ବ୍ରହ୍ମନିରୂପଣ ଗୀତାର ଷଷ୍ଠ ଅଧ୍ୟାୟରେ ଶ୍ରୀମନ୍ତେଇ ମହାନିତ୍ୟପୁରର ଏକ ବର୍ଣ୍ଣାଢ୍ୟ ଆଲେଖ୍ୟ ପ୍ରଦାନ କରିଅଛନ୍ତି । ମହାନିତ୍ୟପୁର ମହାଶୂନ୍ୟରେ ଅବସ୍ଥିତ । ଏଥିରେ ଦ୍ୱାଦଶ ପାହାଚ, ଚବିଶ ବେଢ଼ା, ଅଷ୍ଟ ଦ୍ୱାର ଓ ଅଷ୍ଟ ବଟ ଏବଂ ଏକସହସ୍ର ଦଳ ପଦ୍ମକୁଞ୍ଜ ଅଛି । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏବଂ ଜଗନ୍ନାଥ ଏଠାରେ ପଡ଼ିଆରୀ ରୂପରେ ରହି ଅନାମ ପରଂବ୍ରହ୍ମଙ୍କ ସହିତ ଭକ୍ତମାନଙ୍କର ସାକ୍ଷାତ କରାଇ ଅଛନ୍ତି । ଏଠାରେ ରୋଗ, ଶୋକ, ଦୁଃଖ, ବ୍ୟାଧି କିମ୍ବା ଭୟ ଭ୍ରାନ୍ତି ନାହିଁ । ଏହା ଉତ୍ପତ୍ତି, ସ୍ଥିତି ଓ ଲୟର ଅତୀତ । ଏଥିରେ ଜନ୍ମ ମୃତ୍ୟୁ ନାହିଁ କି କାଳର ପ୍ରବେଶ ନାହିଁ । ଏହା ନିତ୍ୟ ଆନନ୍ଦମୟଧାମ । ମହାନିତ୍ୟ ମଣ୍ଡଳରେ ଉଚ୍ଚନୀଚ ବାଛବିଚାର କିମ୍ବା ଜାତିଭେଦ ନାହିଁ । ଏଠାର ଅଧିବାସୀଗଣ ଚିର ପବିତ୍ର । ଏମାନେ ପବିତ୍ର ଗୋମୟ ଦେହରେ ଲଗାନ୍ତି ଓ ଗୋମୂତ୍ର ପାନ କରନ୍ତି । ଏମାନେ ସମସ୍ତେ ସିଦ୍ଧପୁରୁଷ । ମହିମାଧର୍ମାବଲମ୍ବୀ ଭକ୍ତମାନଙ୍କର ଏହା ଶେଷ ଆଶ୍ରୟ ସ୍ଥଳ । "ମହିମାକୁ ଯେତେ ପ୍ରାଣୀ ଆଶ୍ରିତ କରିବେ, ମହାନିତ୍ୟ ମଣ୍ଡଳରେ ସମସ୍ତେ ରହିବେ ।" ବେଦାନ୍ତର ବ୍ରହ୍ମଲୋକ ଓ ବୈଷ୍ଣବମାନଙ୍କର ବୈକୁଣ୍ଠଧାମ ଦ୍ୱାରାରେ ଶ୍ରୀମନ୍ତେଇ ମହାନିତ୍ୟପୁରର ପରିକଳ୍ପନା କରିଥିବା ଅନୁମିତ ହୁଏ ।

**ମହିମାଗର୍ଭ—**

ବ୍ରହ୍ମନିରୂପଣ ଗୀତାର ସପ୍ତମ ଅଧ୍ୟାୟରେ ଶ୍ରୀମନ୍ତେଇ ମହିମାଗର୍ଭ ସମ୍ବନ୍ଧରେ ଉଲ୍ଲେଖ କରିଅଛନ୍ତି । ସ୍ତୁତିଚନ୍ତାମଣି ଓ ଅନ୍ୟାନ୍ୟ ରଚନାମାନଙ୍କରେ ମଧ୍ୟ ମହିମାଗର୍ଭ ବିଷୟ ବର୍ଣ୍ଣିତ ହୋଇଛି । ତାହାଙ୍କ ମତରେ ତିନିଭୁବନ, ନବଖଣ୍ଡ ମେଦିନୀ, ସୂର୍ଯ୍ୟଚନ୍ଦ୍ର ସଂହାରକ କାଳ, ନବଲକ୍ଷତାରା, ତରୁଲତା, ଧରିତ୍ରୀ, ଛପନ କୋଟି ଜୀବ, ଅଷ୍ଟକୋଟି କାନ୍ତାରୀ, ରାଧାକୃଷ୍ଣ, ଲକ୍ଷ୍ମୀସରସ୍ୱତୀ, ଜ୍ଞାନ ଅଜ୍ଞାନ, କ୍ଷୁଧା ତୃଷା, ଶୁଭ ଅଶୁଭ, ଉତ୍ପତ୍ତି, ସ୍ଥିତି, ଲୟ ସବୁ ମହିମା ଗର୍ଭରୁ ଉତ୍ପନ୍ନ ହୋଇଛି । ଏହାର ଅର୍ଥ ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ପରମାତ୍ମାଙ୍କ ଠାରେ ଅବସ୍ଥିତ । ତାଙ୍କଛଡ଼ା ଏ ବିଶ୍ୱବ୍ରହ୍ମାଣ୍ଡରେ ଆଉ କିଛି ନାହିଁ । ଉଦର ଏଠାରେ ଏକ ରୂପକ ଭାବରେ ବ୍ୟବହାର କରାଯାଇଛି । ଉପନିଷଦରେ ବର୍ଣ୍ଣିତ ହିରଣ୍ୟଗର୍ଭ ଦ୍ୱାରାରେ ଶ୍ରୀମନ୍ତେଇ ମହିମା ଗର୍ଭର ପରିକଳ୍ପନା କରିଥିବା ଅନୁମିତ ହୁଏ ।

**ଗୁରୁବାଦ—**

ଜ୍ଞାନରୂପ ଅଞ୍ଜନ ଶଳାକାଦ୍ୱାରା ଯିଏ ମନୁଷ୍ୟର ଜ୍ଞାନ ଚକ୍ଷୁ ଉନ୍ମିଳିତ କରନ୍ତି ତାହାଙ୍କୁ ଗୁରୁ କୁହାଯାଏ । ମନୁଷ୍ୟ ଜୀବନର ଚାରି ପୁରୁଷାର୍ଥ ମଧ୍ୟରେ ମୋକ୍ଷ ହେଉଛି ଶ୍ରେଷ୍ଠ ।

ମୋକ୍ଷର ପଥପ୍ରଦର୍ଶକ ହେଉଛନ୍ତି ଗୁରୁ । ସେଥିପାଇଁ ଭାରତୀୟ ଧର୍ମ ପରମ୍ପରାରେ ଗୁରୁଙ୍କର ସ୍ଥାନ ଅତ୍ୟନ୍ତ ଉଚ୍ଚରେ । ଉପଯୁକ୍ତ ଗୁରୁ ନିର୍ବାଚନ ସାଧକ ଜୀବନର ପ୍ରଧାନ କର୍ତ୍ତବ୍ୟ । ଆମ ଶାସ୍ତ୍ର ପୁରାଣରେ ଗୁରୁଙ୍କୁ ବ୍ରହ୍ମା, ବିଷ୍ଣୁ, ଦେବଦେବ ମହେଶ୍ୱରଙ୍କ ସଙ୍ଗେ ତୁଳନା କରାଯାଇଅଛି ଏବଂ ତାହାଙ୍କୁ ସାକ୍ଷାତ ପରଂବ୍ରହ୍ମ ବୋଲି କୁହାଯାଇଛି । ସବୁ ଧର୍ମରେ ଗୁରୁଙ୍କର ସ୍ଥାନ ଅତି ଉଚ୍ଚରେ ହେଲେହେଁ ମହିମାଧର୍ମରେ ଗୁରୁବାଦର ଚରମ ବିକାଶ ଦେଖିବାକୁ ମିଳେ । ଗୁରୁ ଆରାଧନା ଓ ଗୁରୁସେବା ମହିମା ଧର୍ମସାଧନାର କେନ୍ଦ୍ରବିନ୍ଦୁ । ସେଥିପାଇଁ ଭକ୍ତକବି ଭୀମଭୋଇ ଜଗତର ଲୋକମାନଙ୍କୁ ଗୁରୁ ଆରାଧନା ଓ ଗୁରୁସେବାରେ ବ୍ରତୀ ହେବାପାଇଁ କାତର ନିବେଦନ ଜଣାଇଅଛନ୍ତି ।

"ଗୁରୁସେବା ଲୋକ ନିର୍ମଳ ମରଣ ନ ଯାନ୍ତି ଯମର କତି ।
କାଳଗଣ ତାଙ୍କୁ ପ୍ରାଣରେ ଡରନ୍ତି ନ ଦେଇ ପାରନ୍ତି ଶାସ୍ତି ॥
ସାଧୁସୁଜ୍ଞଜନ ଗୁରୁସେବା କର ପଥଶ୍ରମ ନୁହ ଚହେ ।
କରପଦ ଯୋଡ଼ି ବିନସ୍ତ ହେଉଛି ବୁଝାଇ କହୁଛି ଏତେ ॥
ମୋର ବଚନରକୁ ଯାହା ବିଶୁଅଛ ଗୁରୁସେବା ଧର୍ମ ସାର ।
କିଛିହିଁ ନକଲେ ଗୁରୁସେବା ଧର୍ମ ପାରୁଅଛ ଯେବେ କର ॥
ଆଉ କର୍ମମାନ ବହୁତ ଅଡ଼ୁଆ ଗୁରୁଭଗତି ବିଶ୍ୱାସ ।
ବୁଝି ଯେବେ ପାର ମେରୁଗିରି ପ୍ରାୟ କୋଟିଏ ନାଗର ବିଷ ॥ (ସ୍ତୁତିଚିନ୍ତାମଣି)

ମହିମା ଧର୍ମର ବିଧି ଅନୁଯାୟୀ ଅଲେଖ ପରଂବ୍ରହ୍ମ ମହିମା ସ୍ୱାମୀହିଁ ଏକମାତ୍ର ଗୁରୁ । ଯେଉଁମାନେ ଧର୍ମୋପଦେଶ ବା ଦୀକ୍ଷା ପ୍ରଦାନ କରିଥାନ୍ତି ସେମାନେ ସେହି ପରମ ଗୁରୁଙ୍କର ପ୍ରତିନିଧି ଭାବରେ ହିଁ ଆରାଧ୍ୟ । ସେଥିପାଇଁ ମହିମାଧର୍ମରେ ଗୁରୁ ଶିଷ୍ୟ ମଧ୍ୟରେ ଉଚ୍ଚନୀଚ, ସାନ ବଡ଼ ଭେଦଭାବ ନାହିଁ ।

"ଭଗତ ଅଙ୍ଗଟି ପ୍ରଭୁ ଅଙ୍ଗ ଜାଣ ଜୀବରୂପେ କରି ବିଜେ ।
ଗୁରୁଚରଣକୁ ଶିଷ୍ୟ ଭଜୁଥାଇ ଶ୍ରୀଗୁରୁ ଶିଷ୍ୟକୁ ଭଜେ ॥ (ସ୍ତୁତିଚିନ୍ତାମଣି)

ସେଥିପାଇଁ ମହିମା ଧର୍ମରେ ବ୍ରହ୍ମଶରଣ ଦର୍ଶନ ପରେ ଉଭୟ ଗୁରୁ ଓ ଶିଷ୍ୟ ପରସ୍ପରକୁ ମାନ୍ୟ ପ୍ରଦର୍ଶନ କରିଥାନ୍ତି । ସନ୍ଥସଙ୍ଗ ଗୋଷ୍ଠୀରେ ଉଭୟ ପରସ୍ପରକୁ ଭୁଞ୍ଜାଇଥାନ୍ତି ।

**ପ୍ରଭୁ ଆଜ୍ଞା—**

ମହିମା ଧର୍ମ ଅନୁଯାୟୀ ଏକ ଅଦୃଶ୍ୟ ଅଲେଖ ପରଂବ୍ରହ୍ମହିଁ ଅଖିଳ ବିଶ୍ୱଭୁବନର ନିୟାମକ । ତାଙ୍କର ଆଦେଶରେ ବିଶ୍ୱସୃଷ୍ଟି ଆତଯାତ ହେଉଛି । ତାଙ୍କର ଆଦେଶ ବିନା ଘାସ ପତରଟିଏ ମଧ୍ୟ ହଲିପାରିବ ନାହିଁ ।

"ବିନା ଆଜ୍ଞାରେ ତରଣ ନ ହଲଇ ଆଜ୍ଞା ହେଲେ ପାପ ଯିବ ।
ଆଜ୍ଞାକୁ ଅବଜ୍ଞା କରି ପାପଦୋଷ କେମନ୍ତେ ଅଙ୍ଗେ ରହିବ ॥

ଆଜ୍ଞାରେ ସର୍ବେଶ ବେଦାଗ୍ନି ଅଷ୍ଟନ୍ତି ଆଜ୍ଞା ନ ଲଙ୍ଘନ୍ତି କେହି ।
ଗୁରୁ ପାତକ ପରମାଦ ଅଙ୍ଗେ କ ପାଶବ ରହି ॥
ଆଜ୍ଞାରେ ସପତପିନ୍ଧୁ ପୁରିଅଛୁ ଲଙ୍ଘିବାକୁ ନାହିଁ କୂଳ ।
ମୋର ପାତକ କେମନ୍ତେ ନପ୍ଲାଉଁବ ରହିଥିବ କାଳ କାଳ ॥
ଆଜ୍ଞାରେ ରହିଛୁ ମହି ନ ପଡୁଛୁ ରସାତଳେ ।
ଏ ମୋର ଦୁଃଖ କେମନ୍ତେ ନ ଯିବ ଶଙ୍କରର ଦୟାହେଲେ ।

(ସ୍ତୁତିଚିନ୍ତାମଣି—୭୭ ବୋଲି)

**ମହିମା ସମାଜ—**

ସମାଜ ଏବଂ ଧର୍ମ ପରସ୍ପରଠାରୁ ଅଭିନ୍ନ । ସମାଜ ବିନା ଧର୍ମର କଳ୍ପନା ଅସମ୍ଭବ । ସମାଜର ଉନ୍ନତି ବିଧାନହିଁ ଧର୍ମର ଲକ୍ଷ୍ୟ । ଏହି ସମାଜ ସଚେତନତା ମହିମା ଧର୍ମର ଏକ ପ୍ରଧାନ ବିଶେଷତ୍ୱ । ଏହା ଆତ୍ମମୁକ୍ତି ସଙ୍ଗେ ସଙ୍ଗେ ସର୍ବମୁକ୍ତି ଉପରେ ଗୁରୁତ୍ୱ ଆରୋପ କରିଥାଏ । ସେଥିପାଇଁ ଭୀମଭୋଇ ପ୍ରାଣର ଆବେଗରେ ଗାଇଉଠିଛନ୍ତି— "ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।" ସେଥିପାଇଁ ମହିମା ସ୍ୱାମୀ ମହିମା ଧର୍ମର ସାଧୁସନ୍ଥମାନଙ୍କୁ ନିର୍ଜନ ବନ ଦେଶରେ କୃଚ୍ଛ୍ର ସାଧନା ଦ୍ୱାରା ଆତ୍ମମୁକ୍ତି ନଲୋଡ଼ି ଗ୍ରାମଗ୍ରାମାନ୍ତରରେ ପଦବ୍ରଜରେ ପର୍ଯ୍ୟଟନପୂର୍ବକ ଜଗତର କଲ୍ୟାଣ ସାଧନ ପାଇଁ ନିର୍ଦ୍ଦେଶ ଦେଇଅଛନ୍ତି । ସେ ଅନୁଭବ କରିଥିଲେ ଯେ ସତ୍ୟ ମହିମା ସମାଜର ପ୍ରତିଷ୍ଠା ବିନା ମହିମା ଧର୍ମର ବିକାଶ ସୁନିଶ୍ଚିତ ନୁହେଁ । ସେଥିପାଇଁ ମହିମା ଧର୍ମ ପ୍ରଚାର ଦ୍ୱାରା ସେ ସମାନତା, ସତ୍ୟ, ଅହିଂସା, ବ୍ରହ୍ମଚର୍ଯ୍ୟ ଓ ନିଷ୍କାମ କର୍ମଯୋଗ ଉପରେ ପ୍ରତିଷ୍ଠିତ ଏକ ନୂତନ ସମାଜର ନିର୍ମାଣ ପାଇଁ ଉଦ୍ୟମ କରିଥିଲେ । ସେ ବର୍ଣ୍ଣବୈଷମ୍ୟ ଓ ଜାତି ବିଚାର ଉପରେ ପ୍ରତିଷ୍ଠିତ ସମାଜ ବ୍ୟବସ୍ଥାକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ସେ କହୁଥିଲେ ଯେ ମନୁଷ୍ୟ ଏକ । ଜାତି ବୋଇଲେ କେବଳ ସ୍ତ୍ରୀ ଏବଂ ପୁରୁଷ , ଏହା ବ୍ୟତୀତ ତୃତୀୟ ଜାତି ନାହିଁ । ସେ କହୁଥିଲେ ଯେ ସମତା ହିଁ ସୃଷ୍ଟିର ନିୟମ । ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ଅଗ୍ନି ଏମାନେ ସମତାର ବାଣୀ ହିଁ ପ୍ରଚାର କରୁଅଛନ୍ତି । ସ୍ୱୟଂ ପରଂବ୍ରହ୍ମ ଅସ୍ପୃଶ୍ୟ ଚାଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କଠାରେ ସମାନ ଭାବରେ ଜୀବ ରୂପରେ ବିଦ୍ୟମାନ । ତେଣୁ ସମାନତାର ନୀତି ଉପରେ ସତ୍ୟ ମହିମା ସମାଜ ପ୍ରତିଷ୍ଠିତ ହେବା ବିଧେୟ । ଏ ବିଷୟରେ ଭୀମଭୋଇ ତାହାଙ୍କ 'ନିର୍ବେଦ ସାଧନ' ଗ୍ରନ୍ଥରେ ଲେଖି ଅଛନ୍ତି :

ଦକ୍ଷି ସଂପୂର୍ଣ୍ଣ ନିର୍ବେଦରେ । ଭିକ୍ଷା କରିବୁ ସର୍ବଘରେ ॥
ଏକାନ୍ତ ମଣି ଦୃଢ଼ ଚିତ୍ତ । ସାମାନ୍ୟ ମଣିବୁ ଜଗତ ॥
ଦୁଷ୍ଟ ପତିତ ଦୁରାଚାରେ । ଅନ୍ତର ନ କର ଚିତ୍ତରେ ॥
ସଂସାରେ ନାହିଁ ପରାପର । ଅନାଦମସ୍ତେ ନିର୍ବିକାର ॥
ରହିଛୁ ସର୍ବଠାରେ ପୂରି । ଅଣବିକାର ମତ ଧରି ॥

ସତ୍ୟ ହେଉଛି ଏହି ସମାଜର ଭିତ୍ତିଭୂମି । ସତ୍ୟଚିନ୍ତନ, ସତ୍ୟକଥନ, ସତ୍ୟାଚରଣ ଓ ସକଳ ବିଷୟରେ ସତ୍ୟର ଆଶ୍ରୟ ଗ୍ରହଣ ଏହି ସମାଜର ଆଦର୍ଶ । ଭକ୍ତକବି ଭୀମଭୋଇ ତାହାଙ୍କ ସ୍ତୁତିଚିନ୍ତାମଣି କାବ୍ୟରେ ଏହାର ଏକ ମନୋଜ୍ଞ ଚିତ୍ର ପ୍ରଦାନ କରିଅଛନ୍ତି ।

ସତ୍ୟ ଧର୍ମ ସତ୍ୟ କର୍ମ କର ସତ୍ୟେ କର ଗୁରୁସେବା
ପ୍ରସନ୍ନ ହୋଇବ ଅଲେଖ ଦେବତା ନିଶ୍ଚୟ ମୁକତି ଦେବା ॥
ସତ୍ୟରେ ସ୍ନାହାନ ସତ୍ୟରେ ମାର୍ଜନ ସତ୍ୟରେ କର ଭୋଜନ ।
ସାତ୍ତ୍ୱିକ କର୍ମରେ ସେ ଅଲେଖ ଦଅଁ ନିଶ୍ଚୟ ହେବ ପ୍ରସନ୍ନ ॥
ସତ୍ୟରେ ଶୋଇବ ସତ୍ୟରେ ବସିବ ସତ୍ୟେ କର ଫଳଶ୍ରୁତି ।
ମହିମା ଭଜିବା ଲୋକମାନେ ଯେତେ କର ଏହି ଧର୍ମ କାନ୍ତି ॥
ସତ୍ୟରେ କହିବ ସତ୍ୟେ ରହିଥିବ ସତ୍ୟରେ ଯିବ ଆସିବ ।
ସତ୍ୟ କର୍ମରେ ଯେତେ କୀରତିମାନ ଯୁଗେ ଯୁଗେ ରହିଥିବ ॥

ମହିମା ଧର୍ମର ଦ୍ୱିତୀୟ ନୀତି ହେଉଛି ଅହିଂସା । ମହିମାସ୍ୱାମୀ ନିଜ ଜୀବନରେ ସର୍ବଦା ଅହିଂସା ଆଚରଣ କରୁଥିଲେ ଏବଂ ଭକ୍ତମାନଙ୍କୁ ଯେ କୌଣସି କାରଣରୁ ହିଂସାଚରଣ ନ କରିବାକୁ କହୁଥିଲେ ।

"ଅହିଂସାଧର୍ମକୁ ଆଶ୍ରା ଯେବେ କର ଅହିଂସାରେ କର ଦୃଢ଼ ।
ଗୁରୁସେବା କର ହିଂସାବାଦୀ ହେଲେ ଶୂନ୍ୟରୁ ପଡ଼ିବ ମାଡ଼ ॥" (ସ୍ତୁତିଚିନ୍ତାମଣି)
ଅହିଂସ ହୁଅ ସର୍ବଜନ । ହିଂସାରେ ନାହିଁ ବ୍ରହ୍ମଜ୍ଞାନ ॥ (ଅ. ବ. ଗୀ)

ମହିମା ଧର୍ମର ଅନ୍ୟ ଏକ ଅବଶ୍ୟ ପାଳନୀୟ ନୀତି ହେଉଛି ବ୍ରହ୍ମଚର୍ଯ୍ୟ । ଏହା ଉଭୟ ସନ୍ନ୍ୟାସୀ ଓ ଗୃହସ୍ଥମାନଙ୍କ ପାଇଁ ପ୍ରଯୁଜ୍ୟ । ସନ୍ନ୍ୟାସୀମାନେ କାୟମନୋବାକ୍ୟରେ ବ୍ରହ୍ମଚର୍ଯ୍ୟ ପାଳନ କରିବେ । ସକଳ କାମୋଦ୍ଦୀପକ ପଦାର୍ଥଠାରୁ ଦୂରରେ ରହିବେ । ଗୃହସ୍ଥମାନେ ଋତୁକାଳ ବ୍ୟତୀତ ସ୍ୱାମୀସ୍ତ୍ରୀ ଭାଇଭଉଣୀ ଭଳି କାଳ ଯାପନ କରିବେ ।

"ଭାଇଭଗ୍ନୀ ପ୍ରାୟ ଦିନ ନେଉଥିବ ଋତୁମତେ ପତ୍ନୀପତି ।
ସାଧୁସେବା କରି ଦିନ ବଞ୍ଚୁଥିବ ବୋଲାଇବ ଯତି ସତୀ ॥"
(ସ୍ତୁତିଚିନ୍ତାମଣି, ୯୨ ବୋଲି)

ମହିମାଧର୍ମାବଲମ୍ବୀ ଫଳାକାଂକ୍ଷା ବର୍ଜିତ ଓ କାମନା ଶୂନ୍ୟ ହୋଇ ଧନ ଦାରା ସୁତ ଆଦି ଅଲେଖ ଚରଣାରବିନ୍ଦରେ ସମର୍ପଣପୂର୍ବକ ନିଷ୍କାମ କର୍ମଯୋଗ ଆଚରଣ କରିବେ ।

"ଆପଣା ବୃଦ୍ଧି ଦୁଃଖ ସୁଖ ଫନ୍ଦାକୁ ଗୁରୁଶ୍ରୀଚରଣେ ଦେବ ।
ଘରଦ୍ୱାର ଆଦି କରି ସକଳ ସମର୍ପି ଦାସପଣେ ଯୋଗାଇବ ॥

ଦାସ ପ୍ରାୟ ସଦଗୁରୁଠାରେ ଦାନାପାଣି ଅନୁସରି ।
ସଦାସର୍ବଦା ସମର୍ପି ଦେଉଥିବ ଯାହି ଯାହି ବୋଲିକରି ॥"

ଶ୍ରୁତ ବାକ୍ୟ ଚକ୍ଷୁ ବୃତ୍ତିକରି ଚିନ୍ତ ଅର୍ଥ ନିରୀହାନ ।
ଆପଣା ହୃଦରୁ କଳନା ଛଡ଼ାଇ ନିଷ୍କାମ ହୋଇବ ପୁଣି ॥
(ସ୍ତୁତିଚିନ୍ତାମଣି, ୮୦ ବୋଲି)

× × ×

ନିଷ୍କାମ ବ୍ରହ୍ମଙ୍କୁ ଯେବେ ଆଶ୍ରୀକଲି ଆପଣେ ନିଷ୍କାମ ହୁଅ ।
ଗୁରୁଆଜ୍ଞା ବହି ସକାମେ ପଡ଼ିଲେ ହୋଇବ ବ୍ରହ୍ମରେ ଦ୍ରୋହ ॥

ମହିମାଧର୍ମ ଏକ ଭକ୍ତିମୂଳକ ଧର୍ମ । ଗୁରୁସେବା ଓ ପରଂବ୍ରହ୍ମଙ୍କ ପ୍ରତି ଅଚଳା ଓ ଐକାନ୍ତିକ ଭକ୍ତି ଉପରେ ଏଥିରେ ବିଶେଷ ପ୍ରାଧାନ୍ୟ ଦିଆଯାଇଥାଏ । ହେଲେହେଁ ଏ ଭକ୍ତି ନୀତି ନିରପେକ୍ଷ ନୁହେଁ । ବୌଦ୍ଧଧର୍ମ ପରି ଏହା ନୈତିକତାର କ୍ଷୁର ଧାର ଉପରେ ପ୍ରତିଷ୍ଠିତ । ଏଥିରେ କାମ କ୍ରୋଧାଦି ଷଡ଼ରିପୁର ଦମନ ଓ ଶାନ୍ତି, ଶୀଳ, ଦୟା, କ୍ଷମା ଆଦିର ନିଷ୍ଠାପର ଆଚରଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥାଏ । ନୀତି ମାର୍ଗରୁ ବିଚ୍ୟୁତ ହେଲେ ମହିମାଧର୍ମାବଲମ୍ବୀ ବ୍ୟକ୍ତି, ସେ ସନ୍ନ୍ୟାସୀ ହୁଅନ୍ତୁ ବା ଗୃହସ୍ଥ ହୁଅନ୍ତୁ ତାଙ୍କୁ ଦଣ୍ଡଭୋଗ କରିବାକୁ ହୋଇଥାଏ ।

**କର୍ମବାଦ ଓ କରୁଣା—**

ସନାତନ ଆର୍ଯ୍ୟଧର୍ମ ଓ ବୌଦ୍ଧଧର୍ମ ପରି ମହିମାଧର୍ମରେ କର୍ମବାଦକୁ ସ୍ୱୀକାର କରାଯାଇଛି । ମନୁଷ୍ୟର କର୍ମ ତାର ଜୀବନର ନିୟାମକ । କର୍ମଯୋଗେ ମନୁଷ୍ୟ ସୁଖ ଦୁଃଖ ଓ ପାପ ପୁଣ୍ୟ ଭୋଗ କରିଥାଏ । ପୁଣ୍ୟ ଫଳରେ ମନୁଷ୍ୟ ସ୍ୱର୍ଗାଦି ଲୋକ ଭୋଗକରେ ଏବଂ ପାପ କର୍ମ ଯୋଗେ ନର୍କଗାମୀ ହୁଏ । କର୍ମଫଳ ଯୋଗେ ମନୁଷ୍ୟ ଜନ୍ମ ମରଣ ରୂପ ସଂସାର ଚକ୍ରରେ ଭ୍ରମଣ କରି ଅଶେଷ ଦୁଃଖ ଓ ଯାତନା ଭୋଗ କରେ । କର୍ମ ବୋଇଲେ କେବଳ ଇହ ଜନ୍ମର କର୍ମ ନୁହେଁ । ପୂର୍ବ ଜନ୍ମରୁ ସଂଚିତ କର୍ମଫଳ ମଧ୍ଯ ମନୁଷ୍ୟଙ୍କୁ ଭୋଗ କରିବାକୁ ହୋଇଥାଏ । ଏହାକୁ କପାଳ ଲିଖନ ବୋଲି କୁହାଯାଏ ।

"ପୂର୍ବେ ସେବା ଭକ୍ତି ନ କରି ନିତି ତେଣୁ ମୋ କରମ ଊଣା ।
ପୂର୍ବେ କାହାକୁ ମୁଁ ବିନୟେ ଖେଦିଲି ଏବେ ମୁଁ ହେଉଛି ବଣା ॥
କାହାର ଥିତ ବସାଘର ଭାଙ୍ଗି ଆଣି କ ଅଥାଣି କଲି ।
ସେହି ଯୋଗେ ମୋତେ ପ୍ରାପତ ହୋଇଲା ଏବେ ପ୍ରତ୍ୟକ୍ଷେ ଜାଣିଲି ॥

କର୍ମବନ୍ଧନ ଛିନ୍ନ ନ ହେବା ପର୍ଯ୍ୟନ୍ତ ମନୁଷ୍ୟର ମୁକ୍ତି ବା ଭଗବଦ୍ ଦର୍ଶନ ସମ୍ଭବପର ନୁହେଁ । ନିଜର ପୁରୁଷକାର ଦ୍ୱାରା ଭବବନ୍ଧନ ଛିନ୍ନ କରି ଭଗବାନଙ୍କର ଦର୍ଶନ ପାଇବା ମୁକ୍ତିଲାଭ କରିବା ସମ୍ଭବପର ନୁହେଁ ।

ଈଶ୍ୱରଙ୍କର କୃପା ହେଲେ ଭବସାଗର ଗୋଷ୍ପଦଭୂଲ୍ୟ ଅତିକ୍ରମ କରିବା ସମ୍ଭବପର ହୁଏ ଏବଂ ମେରୁପ୍ରମାଣ ପାପରାଶି କ୍ଷଣକରେ ବିନଷ୍ଟ ହୋଇଯାଏ ।

"ଅନ୍ତର୍ଯାମୀ ଗୁରୁ ଜାଣି ତାର ମୁକ୍ତ ଦୟାକର ।
କର୍ମବୃକ୍ଷ ମୋର ଅତ ଖୀଣ ହୋଇ ଫଳୁଛୁ ପୋକରାଫଳ ॥
× × ×
ଗୁରୁ କୃପା ବହ୍ନି ଜ୍ଞାନ କରୁଆରେ ଛେଦ ଖଣ୍ଡ ଖଣ୍ଡ କରି ।
ହୃଦୟରେ ମୋର ପାପ ପୂରିଅଛୁ ଦନୁଦନ ମହାଭାରି ॥
× × ×
ଅଜ୍ଞାନରେ ଯେତେ ପାପ କରିଥିଲେ ଏ ଧର୍ମେ ହୋଇବ କ୍ଷୟ ।
ଗୁରୁବ୍ରହ୍ମ ଯେବେ ସୁଦୟା କରିବେ ମନରେ ନଥିବ ଭୟ ॥

ବେଦାନ୍ତ ଓ ସାଂଖ୍ୟ ଦର୍ଶନରେ କରୁଣାର ପ୍ରଶ୍ନ ନାହିଁ । ଅଜ୍ଞାନତା ଦୂର ହୋଇ ଜ୍ଞାନର ଉଦୟ ହେଲେ ମନୁଷ୍ୟ ଆପେ ଆପେ ମୁକ୍ତ ବା କୈବଲ୍ୟ ଲାଭ କରିଥାଏ । ସେଥିପାଇଁ କାହାର କରୁଣା ବା ଅନୁଗ୍ରହର ପ୍ରୟୋଜନ ନାହିଁ । କଠ ଉପନିଷଦରେ ଉଲ୍ଲେଖ ଅଛୁ ଯେ ମନୁଷ୍ୟ ବେଦାଧ୍ୟୟନ, ବୁଦ୍ଧି ଓ ଶାସ୍ତ୍ରଜ୍ଞାନ ଦ୍ୱାରା ବ୍ରହ୍ମ ସାକ୍ଷାତ୍କାର କରିବା ସମ୍ଭବପର ନୁହେଁ । ବ୍ରହ୍ମ ଯାହାକୁ ଅନୁଗ୍ରହ କରନ୍ତି ସେ କେବଳ ବ୍ରହ୍ମ ଦର୍ଶନ ପାଇଁ ସମର୍ଥ ହୁଏ ।

"ନାୟମାତ୍ମା ପ୍ରବଚନେନ ଲଭ୍ୟୋ ନ ମେଧୟା ନ ବହୁନା ଶ୍ରୁତେନ ।
ଯମେବୈଷ ବୃଣୁତେ ତେନ ଲଭ୍ୟ ସ୍ତସ୍ୟୈଷ ଆତ୍ମା ବିବୃଣୁତେତନୁଂ ସ୍ୱାମ୍ ॥"

ମହାଭାରତରେ କରୁଣାତତ୍ତ୍ୱର ବିକାଶ ଦୃଷ୍ଟ ହୁଏ । କରୁଣା ତତ୍ତ୍ୱର ଚରମ ବିକାଶ ଶ୍ରୀମଦ୍‌ଭାଗବତ ଓ ମହାଯାନ ବୌଦ୍ଧ ଧର୍ମରେ ଦେଖିବାକୁ ମିଳେ । ଭଗବାନ ଶ୍ରୀକୃଷ୍ଣ ଜ୍ଞାନହୀନା ବ୍ରଜ ଗୋପିକାମାନଙ୍କର ଅନନ୍ୟ ଭକ୍ତି ଓ ପରିପୂର୍ଣ୍ଣ ଆତ୍ମସମର୍ପଣରେ ସନ୍ତୁଷ୍ଟ ହୋଇ ଅପାର କରୁଣା ବଳରେ ସେମାନଙ୍କୁ ପ୍ରତ୍ୟେକ ଏକ ସଙ୍ଗରେ ସାନ୍ନିଧ ପ୍ରଦାନ କରିଥିଲେ । ବାଳକ ଧ୍ରୁବ, ଦାନବରାଜ ହିରଣ୍ୟକଶିପୁର ପୁତ୍ର ପ୍ରହ୍ଲାଦ ଏବଂ ଭକ୍ତ ଅମ୍ବରୀଷଙ୍କ ପ୍ରତି ଅପାର କରୁଣା ପ୍ରଦର୍ଶନ କରିଥିଲେ । ମହିମାଧର୍ମର କରୁଣାତତ୍ତ୍ୱ ଭାଗବତଦ୍ୱାରା ପ୍ରଭାବିତ ହୋଇଥିବା ଅନୁମିତ ହୁଏ ।

### ବ୍ରହ୍ମଜ୍ଞାନ ଭକ୍ତିଯୋଗ—

ମହିମା ଧର୍ମର ଲକ୍ଷ୍ୟ ହେଉଛୁ ବ୍ରହ୍ମଜ୍ଞାନ, ବ୍ରହ୍ମପ୍ରାପ୍ତି ବା ବ୍ରହ୍ମ ସାକ୍ଷାତ୍କାର । ଏହା ହିଁ ମୋକ୍ଷ । ପୁରାଣ ଶାସ୍ତ୍ରମାନଙ୍କରେ ମୋକ୍ଷର ବିବିଧ ମାର୍ଗ ନିର୍ଦ୍ଦେଶିତ ହୋଇଅଛୁ । ଏଗୁଡ଼ିକ ମଧ୍ୟରେ ତିନିଗୋଟି ମାର୍ଗ ପ୍ରଧାନ, ଯଥା—କର୍ମମାର୍ଗ, ଜ୍ଞାନମାର୍ଗ ଓ ଭକ୍ତିମାର୍ଗ । କେତେକ ଯୋଗକୁ ମୋକ୍ଷର ଏକ ମାର୍ଗ ବୋଲି ମତ ପ୍ରଦାନ କରିଥାଆନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ଯୋଗ ଏକ ସାଧନ । ଉଭୟ ଜ୍ଞାନ ଓ ଭକ୍ତି ମାର୍ଗରେ ଯୋଗର ଉପଯୋଗିତା ସ୍ୱୀକୃତ । ମହର୍ଷି ଶାଣ୍ଡିଲ୍ୟ ତାହାଙ୍କ ଭକ୍ତିସୂତ୍ରରେ ଯୋଗକୁ ଭକ୍ତିର ସହାୟକ ବୋଲି ଉଲ୍ଲେଖ କରିଅଛନ୍ତି । ଏହି ତିନି ମାର୍ଗ ମଧ୍ୟରେ କର୍ମମାର୍ଗ ଅତ୍ୟନ୍ତ ବିଘ୍ନସଙ୍କୁଳ । କାରଣ

ଏଥିରେ ଭ୍ରମ ପ୍ରମାଦର ଯଥେଷ୍ଟ ସମ୍ଭାବନା ରହିଅଛି । ଫଳାକାଂକ୍ଷାବର୍ଜିତ ନହେଲେ କର୍ମ ମୁକ୍ତିର ସାଧକ ହୋଇପାରିବ ନାହିଁ । ଜ୍ଞାନମାର୍ଗ ମଧ୍ୟ ସୁକଠିନ ଓ ସାଧନାସାପେକ୍ଷ । ସାମାନ୍ୟ ଭ୍ରାନ୍ତି ଫଳରେ ଯୁଗଯୁଗର ସାଧନା ନିଷ୍ଫଳ ହେବାର ବହୁ ଦୃଷ୍ଟାନ୍ତ ଶାସ୍ତ୍ର ପୁରାଣମାନଙ୍କରେ ରହିଅଛି । କିନ୍ତୁ ଭକ୍ତି ମାର୍ଗରେ ଏସବୁ ପ୍ରତ୍ୟବାୟର ଆଶଙ୍କା ନାହିଁ । ତେଣୁ ଭକ୍ତିମାର୍ଗକୁ ମୋକ୍ଷ ଲାଭର ଶ୍ରେଷ୍ଠ ମାର୍ଗରୂପେ ନିର୍ଦ୍ଦେଶ କରାଯାଇଥାଏ । ଶ୍ରୀମଦ୍‌ଭଗବଦ୍‌ଗୀତାରେ ଭକ୍ତିଯୋଗର ସୁଗମତା ଓ ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଯାଇ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହୁଛନ୍ତି—

"ମାଂ ଚ ଯୋଽବ୍ୟଭିଚାରେଣ ଭକ୍ତିଯୋଗେନ ସେବତେ<br>ସ ଗୁଣାନ୍‌ସମତୀତ୍ୟୈତାନ୍ ବ୍ରହ୍ମଭୂୟାୟ କଳ୍ପତେ ।" (ଗୀତା ୧୪-୨୬)

ଯେଉଁ ବ୍ୟକ୍ତି ଅଚଳା ଭକ୍ତିର ସହିତ ମୋତେ ଭଜନ କରେ ସେ ତ୍ରିଗୁଣାତୀତ ହୋଇ ବ୍ରହ୍ମପ୍ରାପ୍ତ ହୁଏ ।

ଶ୍ରୀମଦ୍‌ଭାଗବତର ଏକାଦଶ ସ୍କନ୍ଧରେ ଭଗବାନ ଶ୍ରୀକୃଷ୍ଣ ଉଦ୍ଧବଙ୍କୁ କହୁଅଛନ୍ତି— ଅନନ୍ୟ ଭକ୍ତିଭାବନାଦ୍ୱାରା ମୋତେ ପାଇବା ଯେପରି ସହଜ ଯୋଗ, ଜ୍ଞାନ, ବେଦାଧ୍ୟୟନ, ତପସ୍ୟା ଓ ଦାନଦ୍ୱାରା ତାହା ସମ୍ଭବପର ନୁହେଁ । ଭକ୍ତିମାର୍ଗ ଏକ ସରଳ, ସୁଗମ ଓ ସାର୍ବଜନୀନମାର୍ଗ । ଆଖିବୁଜି ଦୌଡ଼ିଲେ ମଧ୍ୟ ଏଥିରେ ପତନର ଭୟ ନାହିଁ । ଭୀମଭୋଇ ଭକ୍ତିମାର୍ଗର ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଯାଇ କହିଛନ୍ତି—

ଶୟନେ ଭୋଜନେ ସ୍ଥିତି ବାସ ସ୍ଥାନେ ଯେ ପାଳୁଛି ଗୁରୁଧର୍ମ ।<br>ଚାରିବେଦ ତାକୁ ସମାନ ନୁହଇ ମୁଖେ ମୁଖେ ତାର ବ୍ରହ୍ମ ।<br>ମାୟାକୁ ନିବାରି ନିଷ୍କାମକୁ ଧରି ଯେ ବୋଲୁଛି ହରିହରି ।<br>ଆବୋରିଛି କାୟେ ମନେ କ୍ଷମାପ୍ରାୟେ ଭିତରି ବାହାରେ ପୂରି ॥<br>ତାର ଭକ୍ତି ଚିହ୍ନ କେ କରିବ ଅନ୍ତ ସମନୋହେ ତ୍ରିଭୁବନ ।<br>କାଳ ଭବଭୟ କି କରିବ ତାକୁ ଦେଖି ଡରୁଥାଇ ଯମ ॥"

(ସ୍ତୁତି ଚିନ୍ତାମଣି—୧୧ ବୋଲି)

ଭକ୍ତି ଶବ୍ଦର ଅର୍ଥ ହେଉଛି ଅନୁରକ୍ତି । ଈଶ୍ୱରଙ୍କଠାରେ ପରମ ଅନୁରକ୍ତିକୁ ଭକ୍ତି କୁହାଯାଏ । ନାରଦ ତାହାଙ୍କ ଭକ୍ତିସୂତ୍ରରେ କହିଅଛନ୍ତି ଯେ ସାଧକ ସ୍ୱକୃତ ସକଳକର୍ମ ପରମାତ୍ମାଙ୍କଠାରେ ସମର୍ପଣ କରିବ ଏବଂ ତାହା ବିସ୍ମୃତ ହେଲେ ପରମ ବ୍ୟାକୁଳତା ପ୍ରକାଶ କରିବାର ନାମ ଭକ୍ତି । ମହର୍ଷି ଶାଣ୍ଡିଲ୍ୟଙ୍କ ମତରେ ଭକ୍ତି ପ୍ରେମରୂପା ଅର୍ଥାତ୍ ଆବେଗିକ । ଭକ୍ତିର ନାନାପ୍ରକାର ଭେଦ ଅଛି । ଶ୍ରୀମଦ୍ ଭାଗବତରେ ନବଧା ଭକ୍ତିର

ଉଲ୍ଲେଖଅଛି । ନାରଦ ଏକାଦଶବିଧ ଭକ୍ତିର ଉଲ୍ଲେଖ କରିଅଛନ୍ତି । ଭକ୍ତିର ଏହି ପ୍ରକାର-ଭେଦକୁ ମୁଖ୍ୟତଃ ପାଞ୍ଚଗୋଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ, ଯଥା—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଏବଂ ମାଧୁର୍ଯ୍ୟ । କିନ୍ତୁ ଏଗୁଡ଼ିକୁ ଭକ୍ତିର ପ୍ରକାରଭେଦ ବୋଲି ନ କହି ପର୍ଯ୍ୟାୟଭେଦ ବୋଲି ବୁଝିବା ଅଧିକ ଯୁକ୍ତିସଙ୍ଗତ । ଦାସ୍ୟଭକ୍ତିରେ ହିଁ ଭକ୍ତିର ଆରମ୍ଭ । ଯେତେବେଳେ ଭକ୍ତ ଭଗବାନଙ୍କ ପାଦପଦ୍ମକୁ ତା ଜୀବନର ଏକମାତ୍ର ଆଶ୍ରୟ ରୂପେ ଗ୍ରହଣ କରି ତାହାଙ୍କଠାରେ ନିଜର ସର୍ବସ୍ୱ ଅର୍ପଣ କରିଦିଏ ସେତେବେଳେ ନିଜକୁ ଭଗବାନଙ୍କର ଦାସ ଏବଂ ଭଗବାନଙ୍କୁ ତା ଜୀବନର ପ୍ରଭୁ ବା ନାଥ ବୋଲି ଅନୁଭବ କରେ । ସଖ୍ୟ ବାତ୍ସଲ୍ୟାଦି ସ୍ତରଦେଇ କ୍ରମେ ସେ ଅନୁଭବ କରେ ଯେ ଭଗବାନ ତାର ଅତି ଆପଣାର । ତଥାପି ଉପାସ୍ୟ ଓ ଉପାସକର ଭେଦ ରହିଯାଏ । ଯେତେବେଳେ ସାଧକର ଦେହ, ମନ, ପ୍ରାଣ ଓ ହୃଦୟ ଭଗବଦ୍‌ଭାବରେ ସମ୍ପୂର୍ଣ୍ଣ ନିମଜ୍ଜିତ ହୋଇଯାଏ, ସେତେବେଳେ ସେ ସର୍ବତ୍ର ହରି ବା ବ୍ରହ୍ମଙ୍କୁ ହିଁ ଦେଖେ । ଜଗତ ତା ପାଇଁ ବ୍ରହ୍ମମୟ ହୋଇଉଠେ । ଏହାହିଁ ପ୍ରେମଭକ୍ତି ବା ମାଧୁର୍ଯ୍ୟଭକ୍ତି । ଏହାକୁ ପରା ବା ଅହେତୁକୀ ଭକ୍ତି ମଧ୍ୟ କହନ୍ତି । ଭାଗବତବର୍ଣ୍ଣିତ ବ୍ରଜାଙ୍ଗନାମାନଙ୍କର ଭକ୍ତି ଏହି ଶ୍ରେଣୀର ଭକ୍ତି । ସେତେବେଳେ ଭକ୍ତ ଭଗବାନଙ୍କଠାରେ ନିଜର ବ୍ୟକ୍ତିସତ୍ତା ସମ୍ପୂର୍ଣ୍ଣ ଭାବରେ ହଜାଇଦିଏ । ଭକ୍ତିର ବିଭିନ୍ନ ଆଦର୍ଶ ବିଷୟରେ ଭକ୍ତିଶାସ୍ତ୍ରମାନଙ୍କରେ ବିଶଦ ବର୍ଣ୍ଣନା ଦୃଷ୍ଟହୁଏ । ଏଗୁଡ଼ିକ ମଧ୍ୟରେ ବିଷୟତ୍ୟାଗ, ଅନାସକ୍ତି, ସଙ୍ଗତ୍ୟାଗ, ଭଗବାନ୍‌ଙ୍କ ନାମ ସ୍ମରଣ, କୀର୍ତ୍ତନ, ମନନ, ନିଦିଧ୍ୟାସନ, ଭଜନ, ଭଗବାନଙ୍କ ଯଶ ଓ ଗୁଣ ଶ୍ରବଣ, ଗାୟନ ଓ କୀର୍ତ୍ତନ ଆଦି ଭକ୍ତିର ପୋଷକ । ଭକ୍ତିର ତୀବ୍ରତା, ଐକାନ୍ତିକତା, ତନ୍ମୟତା ଭକ୍ତିମାର୍ଗର ସାଧନାରେ ଅଗ୍ରଗତିର ପରିମାପକ । ଭକ୍ତିରେ ବିହ୍ୱଳ ହୋଇ ଭକ୍ତ କେତେବେଳେ ନାଚେ, କେତେବେଳେ ଗାଏ, କେତେବେଳେ ହସେ । କେତେବେଳେ ରୋଦନ କରେ ଏବଂ କେତେବେଳେ ଉନ୍ମତ୍ତ ଭଳି ନୃତ୍ୟ କରେ । ପୁଣି କେତେବେଳେ ଜଡ଼ ପାଲଟିଯାଏ । ଏହି ଐକାନ୍ତିକ ଭକ୍ତି ହିଁ ଶ୍ରେଷ୍ଠ ଭକ୍ତି ।

ଭୀମଭୋଇଙ୍କ ରଚନାବଳୀରେ ଶୃଙ୍ଗାର ବା ମାଧୁର୍ଯ୍ୟଭକ୍ତିର ବର୍ଣ୍ଣନା ପ୍ରାୟ ଦେଖାଯାଏ ନାହିଁ । ମହିମାଧର୍ମ ଏକ ସନ୍ନ୍ୟାସ ଆଧାରିତ, ବ୍ରହ୍ମଚର୍ଯ୍ୟପିଣ୍ଡିତ ଧର୍ମ ହୋଇଥିବାରୁ ଏଥିଲେ ଶୃଙ୍ଗାର ଭକ୍ତିର ଅବକାଶ ନାହିଁ । ଭୀମଭୋଇଙ୍କ ରଚନାରେ ସ୍ଥଳ ବିଶେଷରେ ସଖ୍ୟ ଓ ବାତ୍ସଲ୍ୟ ଭକ୍ତିର ଉଲ୍ଲେଖ ଥିଲେ ହେଁ ଦାସ୍ୟ ଭକ୍ତି ହିଁ ମୁଖ୍ୟ । ମହିମାଧର୍ମରେ ଦାସ୍ୟ ଭକ୍ତି ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥାଏ । ନାରଦ ପଞ୍ଚରାତ୍ର ଗ୍ରନ୍ଥରେ ଦାସ୍ୟଭକ୍ତିକୁ ଶ୍ରେଷ୍ଠସ୍ଥାନ ଦିଆଯାଇଛି ।

ଭକ୍ତି ପୁଣି ସକାମ ଓ ନିଷ୍କାମ ଏବଂ ସଗୁଣ ଓ ନିର୍ଗୁଣ ଭେଦରେ ଦ୍ୱିବିଧ । ମହିମା ଧର୍ମରେ ସକାମ ଓ ସଗୁଣ ଭକ୍ତିର ସ୍ଥାନ ନାହିଁ । ଏଥିରେ ନିଷ୍କାମ ଓ ନିର୍ଗୁଣ ଭକ୍ତିଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଥାଏ ।

"କାମନାକୁ ଇଚ୍ଛି ସକାମେ ଭଜନେ ନାହିଁ ତହିଁ କିଛି ଲାଭ ।
ସେବାଭକ୍ତି ଧର୍ମ କିଛି ନୁହେଁ ତାର ଗୁରୁପାଦକୁ ଅଯୋଗ୍ୟ ॥
"ଅରୂପବ୍ରହ୍ମ ସେ ରୂପରେଖ ନାହିଁ ରୂପେ ନକର ଭଜନା ।
ରୂପ ବର୍ଣ୍ଣକୁ ଗ୍ରହି ଯେବେ ଭଜିବ ସବୁ ବ୍ୟର୍ଥହେବ ସିନା ॥
ନିଷ୍କାମ ବ୍ରହ୍ମକୁ ଯେବେ ଆଶ୍ରେକଲ ଆପଣେ ନିଷ୍କାମ ହୁଅ ।
ଗୁରୁ ଆଜ୍ଞା ବହି ସକାମେ ପଡ଼ିଲେ ହୋଇବ ବ୍ରହ୍ମରେ ଦ୍ରୋହ ।"

( ସ୍ତୁତିଚିନ୍ତାମଣି, ୮୯ ବୋଲି )

**ଜ୍ଞାନ ଓ ଭକ୍ତି—**

ମହିମାଧର୍ମର ସାଧନମାର୍ଗର ନାମ ହେଉଛି ବ୍ରହ୍ମଜ୍ଞାନ ଭକ୍ତିଯୋଗ । ଜ୍ଞାନ ଓ ଭକ୍ତି ମଧ୍ୟରେ ଏକ ସୀମାରେଖା ଟାଣିବା ସହଜ ନୁହେଁ । କେଉଁଠି ଜ୍ଞାନର ଶେଷ ଏବଂ ଭକ୍ତିର ଆରମ୍ଭ ତାହା ମଧ୍ୟ ବୁଝାଯାଇ ପାରିବ ନାହିଁ । କେତେକ ଭକ୍ତିବାଦୀ ଜ୍ଞାନକୁ ଭକ୍ତିଠାରୁ ନ୍ୟୂନ ବୋଲି ବିଚାର କରନ୍ତି । ସେମାନଙ୍କ ମତରେ ଜ୍ଞାନ ସାଧନା ମାତ୍ର—ଭକ୍ତି ହିଁ ଏକମାତ୍ର ଲକ୍ଷ୍ୟ । ଭକ୍ତିସୂତ୍ର ପ୍ରଣେତା ମହର୍ଷି ଶାଣ୍ଡିଲ୍ୟଙ୍କ ମତରେ ଭକ୍ତିଜ୍ଞାନର ଜନକ ନୁହେଁ ସହାୟକ ମାତ୍ର—"ଜାନାଗତ ଚେନ୍ନଭିଜ୍ଞତସ୍ୟା ସାହାଯ୍ୟାତ୍ ॥ ( ୧୫ ଶ୍ଳୋକ )"

ଯଦି ବୁଝାଯାଏ ଯେ ଭକ୍ତିରୁ ଜ୍ଞାନର ଉଦୟ ହୁଏ ତାହାହେଲେ ଏହା ଠିକ ନୁହେଁ । ଜ୍ଞାନ ଭକ୍ତିରେ ସହାୟତା ମାତ୍ର କରିଥାଏ ।

ଶ୍ରୀମଦ୍ ଭଗବଦ୍‌ଗୀତାରେ ଭକ୍ତମାନଙ୍କୁ ଚାରିଗୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି; ଯଥା—ଆର୍ତ୍ତ, ଜିଜ୍ଞାସୁ, ଅର୍ଥାର୍ଥୀ ଏବଂ ଜ୍ଞାନୀଭକ୍ତ । ଏହି ଚାରିଶ୍ରେଣୀର ଭକ୍ତମାନଙ୍କ ମଧ୍ୟରେ ଜ୍ଞାନୀ ଭକ୍ତ ଶ୍ରେଷ୍ଠ । କାରଣ ଜ୍ଞାନୀ ପୁରୁଷର ଭକ୍ତି ସ୍ୱତଃସ୍ଫୂର୍ତ୍ତି, ସ୍ୱୟଂସିଦ୍ଧ ଓ ସ୍ୱୟଂସମ୍ପୂର୍ଣ୍ଣ । ଜ୍ଞାନୀପୁରୁଷ ନିଷ୍କାମ ଚିତ୍ତରେ ଭଗବାନଙ୍କୁ ଭକ୍ତି କରିଥାଏ । ଏହାକୁ ଅହୈତୁକୀ ଭକ୍ତି ବୋଲି ବୁଝାଯାଏ । ଏପରି ଭକ୍ତମାନଙ୍କୁ ଆତ୍ମାରାମ ବୋଲି ବୁଝାଯାଏ ।

"ଆତ୍ମାରାମାଶ୍ଚ ମୁନୟୋ ନିର୍ଗ୍ରନ୍ଥାପ୍ୟୁରୁକ୍ରମେ ।
କୁର୍ବନ୍ତ୍ୟହୈତୁକୀଂ ଭକ୍ତି ଇତ୍ଥଭ ଗୁଣୋହରି ।" ଭା ୧. ୭. ୧୧

ଯଥାର୍ଥ ଜ୍ଞାନ ଓ ଭକ୍ତି ଉଭୟ ସାଧନ । ବ୍ରହ୍ମାନୁଭବ ହିଁ ଏକମାତ୍ର ଲକ୍ଷ୍ୟ ।

ଜ୍ଞାନ ଓ ଭକ୍ତି ପରସ୍ପରସାପେକ୍ଷ ଏବଂ ପରସ୍ପରର ପରିପୂରକ । ଜ୍ଞାନରୁ ଯେପରି ଭକ୍ତିର ବିକାଶ ହୋଇଥାଏ ସେହିପରି ଭକ୍ତିରୁ ମଧ୍ୟ ବ୍ରହ୍ମଜ୍ଞାନର ବିକାଶ ହୋଇଥାଏ । ଭୀମଭୋଇ କହିଛନ୍ତି—"ଜ୍ଞାନପର କଥା ଅଶ୍ରୁତା ଅବକ୍ତା ବିନା ଭକ୍ତିରେ କି ପାଇବୁ ।" ଜ୍ଞାନ ଓ ଭକ୍ତି ମଧ୍ୟରେ ଯେଉଁ ଭେଦ ତାହା କେବଳ ମାତ୍ରାଗତ ଭେଦ ରୂପଗତ ନୁହେଁ । ଏହି ଦୃଷ୍ଟିରୁ ବିଚାର କଲେ ମହିମାଧର୍ମର ବ୍ରହ୍ମଜ୍ଞାନ ଭକ୍ତିଯୋଗ ଅତ୍ୟନ୍ତ ସମୀଚୀନ ମନେହୁଏ । ଭକ୍ତିକବି

ଭୀମଭୋଇ ତାହାଙ୍କ ବ୍ରହ୍ମନିରୂପଣଗୀତାରେ ଜ୍ଞାନ ଓ ଭକ୍ତି ମଧ୍ୟରେ ଏକ ଅପୂର୍ବ ସମନ୍ୱୟ ସ୍ଥାପନ କରିଛନ୍ତି ।

"ଆହାର ଭୁଞ୍ଜିଲେ ସିନା ଆତ୍ମାବୋଧ ହେବ
ନାମକୁ ଭଜିଲେ ସିନା ମୁକତି ଲଭିବ ॥
ଭଜିବାରେ କି ଲାଭ ଗୁଣିଲେ ଯାଇ ସିନା ।
ଗୁଣିବାରେ କି ଲାଭ ପଢ଼ିଲେ ଯାଇ ଜଣା ॥
ପଢ଼ିବାରେ କି ଲାଭ ବୁଝିଲେ ସିନା ଅଛି ।
ବୁଝିବାରେ କସ ପ୍ରିୟ ଭେଦ ବାଛି ॥
ଭେଦଜଲେ କି ହେବ ଭଜିଲେ ଅଛି ସବୁ ।
ଭଜୁଥିଲେ କି ହେବ ତେଜିଲେ ମିଳେ ପ୍ରଭୁ ॥
ତେଜ୍ୟାକରି କି ହୋଇ ଧରି ନ ପାରିଲେ ।
ଧରିଲେ କସ ହୋଇ ଚହ୍ଲି ନ ପାରିଲେ ॥
ଚହ୍ଲିଲେ କି ବାନ୍ଧି ଯେମନ୍ତେ ନ ପାରେ ।
ବାନ୍ଧିଲେ କି ହେବ ଯେବେ ଜଗତେ ନ ଧରେ ॥
ଧଇଲେ କି ହେବ ଲାଭ ପାରିଲେ କି ଯାଇ ।
ମହ୍ଲିପାରିଲେ ବ୍ରହ୍ମରେ ତେବେ ଲୀନ ହୋଇ ॥"

(ବ୍ରୁ. ନି. ଗୀ, ୧୧ ଅଧ୍ୟାୟ ୧୦୭-୧୧୬)

ଭୀମଭୋଇଙ୍କ ପ୍ରତ୍ୟକ୍ଷ ଅନୁଭୂତିଲବ୍ଧ ବ୍ରହ୍ମଜ୍ଞାନ ଭକ୍ତିଯୋଗର ଏ ତଥ୍ୟଠାରୁ ଆହୁରି ସ୍ପଷ୍ଟତର ତଥ୍ୟ ଦିଆଯାଇନପାରେ ।

**ଯୋଗ—**

ଯୋଗଶାସ୍ତ୍ରପ୍ରଣେତା ମହର୍ଷି ପତଞ୍ଜଳି ଚିତ୍ତସଂଯମ ବା ଚିତ୍ତବୃତ୍ତି ନିରୋଧକୁ ଯୋଗ ଆଖ୍ୟା ପ୍ରଦାନ କରିଅଛନ୍ତି—"ଯୋଗଶ୍ଚିତ୍ତ ବୃତ୍ତି ନିରୋଧଃ ।" କର୍ମମାର୍ଗ ହେଉ, ଜ୍ଞାନ ମାର୍ଗ ହେଉ, ପ୍ରତ୍ୟେକ ମାର୍ଗରେ ସଫଳତା ପାଇଁ ଚିତ୍ତର ସ୍ଥିରତା ଏକାନ୍ତ ପ୍ରୟୋଜନ । ଶ୍ରୀମଦ୍‌ଭଗବଦ୍ ଗୀତା ଓ ଶ୍ରୀମଦ୍ ଭାଗବତରେ ଜ୍ଞାନଯୋଗ ତଥା ଭକ୍ତିଯୋଗର ସାଧନାରେ ଯୋଗର ଉପଯୋଗିତା ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଭକ୍ତିସୂତ୍ର ପ୍ରଣେତା ମହର୍ଷି ଶାଣ୍ଡିଲ୍ୟ ଯୋଗକୁ ଭକ୍ତିର ସହାୟକ ବୋଲି ମତ ପ୍ରଦାନ କରିଅଛନ୍ତି । "ଯୋଗସ୍ତୂଭୟାର୍ଥମପେକ୍ଷାତ୍ତ୍ର ପ୍ରୟାଜବତ୍‌-ଶାଣ୍ଡିଲ୍ୟ ଭକ୍ତିସୂତ୍ର-୧୯ ।"

ଯୋଗ ବାଜପେୟ ଯଜ୍ଞରେ ପ୍ରୟାଜ ସଦୃଶ ଯୋଗ ଭକ୍ତି ଏବଂ ଜ୍ଞାନର ଅଙ୍ଗସ୍ୱରୂପ ଅଟେ । ଯୋଗର ନାନା ଶ୍ରେଣୀଭେଦ ଅଛି, ଯଥା—ଧ୍ୟାନଯୋଗ, କ୍ରିୟାଯୋଗ, ସମାଧି-ଯୋଗ, ମନ୍ତ୍ରଯୋଗ, ଲୟଯୋଗ ଓ ରାଜଯୋଗ ଓ ହଠଯୋଗ । ପତଞ୍ଜଳି ବର୍ଣ୍ଣିତ ଯୋଗ ପଦ୍ଧତିରେ ନାମ ରାଜଯୋଗ ବା ଅଷ୍ଟାଙ୍ଗ ଯୋଗ । ଅଷ୍ଟାଙ୍ଗ ଯୋଗରେ ଆଠଗୋଟି ଅଙ୍ଗ;

ଯଥା—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ । ମହିମା ଧର୍ମରେ ଯୋଗର ଭୂମିକା ସ୍ୱୀକୃତ ।

**ଧାରଣା ଓ ସମାଧି—**

ମହିମାଧର୍ମର ପ୍ରତିଷ୍ଠାତା ପ୍ରଭୁଙ୍କଗୁରୁ ଯୋଗେଶ୍ୱରଙ୍କର ଯୋଗେଶ୍ୱର ଥିଲେ । କପିଳାସପର୍ବତରେ ସେ ଗାଢ଼ ୨୪ ବର୍ଷ କାଳ ଅସ୍ୱଯୋଗ ସମାଧିରେ ନିମଗ୍ନ ଥିଲେ । ଧର୍ମ ପ୍ରଚାର ସମୟରେ ମଧ୍ୟ ସେ ଅନେକ ସମୟରେ ଯୋଗ ସମାଧିରେ ନିମଗ୍ନ ରହୁଥିଲେ । ମହିମା ଧର୍ମରେ ସିଦ୍ଧସାଧକମାନଙ୍କୁ ଧ୍ୟାନଯୋଗର ଅଭ୍ୟାସ କରିବାକୁ ହୋଇଥାଏ । ମହିମା ଧର୍ମର ଚଉଷଠି ସିଦ୍ଧଙ୍କ ମଧ୍ୟରୁ ଅନେକ ଯୋଗାଭ୍ୟାସରେ ନିପୁଣ ଥିଲେ । ଧ୍ୟାନ ଯୋଗର ତିନଗୋଟି ସ୍ତର । ଯଥା —ମୂର୍ତ୍ତିଧ୍ୟାନ, ଜ୍ୟୋତିଧ୍ୟାନ ଏବଂ ବିନ୍ଦୁଧ୍ୟାନ । ବିନ୍ଦୁ ଧ୍ୟାନରୁ ଅରୂପ ଧ୍ୟାନକୁ ଉଠିବାକୁ ହୁଏ ।

ମହିମା ସ୍ୱାମୀ ଅରୂପ ଧ୍ୟାନ ଉପରେ ଗୁରୁତ୍ୱ ଆରୋପ କରିଅଛନ୍ତି । ବ୍ରହ୍ମଶରଣ ଦର୍ଶନ ସମୟରେ ଶୂନ୍ୟରେ ଦୃଷ୍ଟି ନିବଦ୍ଧ ରଖି ଅରୂପ ନିର୍ଗୁଣ ବ୍ରହ୍ମଙ୍କୁ ଧ୍ୟାନ କରିବାକୁ ହୁଏ । ମହିମା ଧର୍ମରେ ଅଷ୍ଟାଙ୍ଗ ଯୋଗ ପ୍ରତି ମଧ୍ୟ ଧ୍ୟାନ ଦିଆଯାଇଥାଏ । ଭୀମଭୋଇ ତାହାଙ୍କ ସ୍ତୁତିଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା ଏବଂ ନିର୍ବେଦ ସାଧନ ଆଦି ଗ୍ରନ୍ଥରେ ଅଷ୍ଟାଙ୍ଗ ଯୋଗର ବର୍ଣ୍ଣନା କରିଅଛନ୍ତି ।

ଦୃଢ଼ ଆସନ ଧ୍ୟାନ ମୂଳ । ପିଣ୍ଡେ ନୋହିବ ଟଳମଳ ॥
ଦେହର ଲୋମ ନ ହାଲିବ । ଘଣ୍ଟିକା ଜିହ୍ୱା ନ ହାଲିବ ॥
ନାସା ପବନ ନ ଫେରିବ । ଚକ୍ଷୁ ଟମକ ନ ମାରିବ ॥
ଆବର ଏ ମେରୁଦଣ୍ଡକୁ । ନୁଆଇଁ ନ ଭାଙ୍ଗିବ ତାକୁ ॥
ସାଧନା କର ବେନି ଚକ୍ଷୁ । ଲେଉଟାଇବ ଭିତରକୁ ॥
ଯେ ଗଙ୍ଗା ଯମୁନା ତ୍ରିବେଣୀ । ଓଲଟି ବହିବ ଉଜାଣି ॥
ନିଶ୍ଚଳେ ଚଞ୍ଚଳକୁ କାଟି । ହୃଦରେ ପକାଇବୁ ଗଣ୍ଠି ॥
କାମକୁ କରିବ ଦହନ । ଯୋଗସାଧନେ ନେବଦନ ॥
ନବ ଦ୍ୱାରରେ ମୁଦ ଦେଇ । ଶୂନ୍ୟ ଦ୍ୱାରକୁ ଥିବୁ ଚାହିଁ ॥
ସାଧି କରିବୁ ସର୍ବସିଦ୍ଧି । ଏ ଯେ ଅଷ୍ଟାଙ୍ଗ ଯୋଗ ବିଧି ॥

ଅଷ୍ଟାଙ୍ଗ ଯୋଗ ବ୍ୟତୀତ ହଠଯୋଗ ବା ଘଟଯୋଗର ଉଲ୍ଲେଖ ଭୀମଭୋଇଙ୍କର ଗ୍ରନ୍ଥ-ମାନଙ୍କରେ ଦେଖିବାକୁ ମିଳେ । ଘଟଯୋଗକୁ ଶରୀରଭେଦ, ଶରୀରାର୍ଥକ ବା କାୟା ସାଧନା ମଧ୍ୟ କହନ୍ତି । ଘଟଯୋଗର ସାରକଥା ହେଉଛି ଯେ ଅଲେଖ ପରଂବ୍ରହ୍ମ ସର୍ବଘଟରେ ବିଦ୍ୟମାନ । ତେଣୁ ତୀର୍ଥବ୍ରତରେ ବୃଥା ଶ୍ରମ ନକରି ଉପଯୁକ୍ତ ସାଧନା ଦ୍ୱାରା ଘଟ ମଧ୍ୟରେ ତାଙ୍କର ସନ୍ଧାନ ନେବାକୁ ହେବ ।

"ଘଟରେ ନିରୂପଣ କର । ଆତ୍ମା ଗୋଚରେ ତାଙ୍କୁ ଧର ॥
ଘଟରେ ଘାଟିଆ ଅଛନ୍ତି । ଏ ଆତ୍ମା ଉଦ୍ଧାର କରନ୍ତି ॥
ଘୋର ବନଟି ଦେହ ଜାଣ । ଯେ ରୂପେ ହେବ ପରିତ୍ରାଣ ॥
ଘଟରେ ପୂରିଛନ୍ତି ସେହି । ଜୀବନ ଲିଙ୍ଗ ପ୍ରାପ୍ତ ହୋଇ ॥
ଘାଣ୍ଟି ହେଉଛ ବୃଥାରେ । ପ୍ରଭୁ ଅଛନ୍ତି ଏ ଘଟରେ ॥
(ଅ.ବ୍ର.ଗୀ ପଞ୍ଚମଅଧ୍ୟାୟ)

ସ୍ତୁତିଚିନ୍ତାମଣି କାବ୍ୟରେ ଭୀମଭୋଇ ଘଟଯୋଗ ସାଧନା ଦ୍ୱାରା ଘଟ ମଧ୍ୟରେ ବ୍ରହ୍ମ ନିରୂପଣ କରିବା ପାଇଁ କାତର ନିବେଦନ ଜଣାଇଛନ୍ତି ।

ଘଟକୁ ନିରନ୍ତରେ ଭେଦ ପିଣ୍ଡବ୍ରହ୍ମାଣ୍ଡ ତୋଳିବ ।
ଆପଣା ମନ ଧ୍ୟାନରେ ଯୋଗେ ପଶି ଘଟ ମଧ୍ୟରେ ବୁଲିବ ॥
ଶରୀର ଅର୍ଥେ ସର୍ବତୀର୍ଥ କରିବ ପରିଶ୍ରମ ହେବନାହିଁ ।
ଯୋଗୀ ସୂନ୍ୟହୋଇ ବାହାରେ ଭ୍ରମିଲେ ତା ତହୁଁ ଅଜ୍ଞାନ ନାହିଁ ॥
ପିଣ୍ଡ ବ୍ରହ୍ମାଣ୍ଡକୁ ଭେଦ ନ ପାରିଲେ ଯୋଗୀପଣ ଅକାରଣ ।
ଦୁନିଆ ଦୋରଙ୍ଗୀ ପରି ଏକ ହୋଇ ବୃଥାର୍ଥେ ଯାଇଣ ଦିନ ॥ (ସ୍ତୁ:ଚି: ୮୪ବୋଲି)

ହିନ୍ଦୁ ତନ୍ତ୍ର ଓ ବୌଦ୍ଧତନ୍ତ୍ର ଗ୍ରନ୍ଥମାନଙ୍କରେ ଘଟଯୋଗର ବିସ୍ତୃତ ବର୍ଣ୍ଣନା ଦୃଷ୍ଟ ହୁଏ । ତନ୍ତ୍ରଶାସ୍ତ୍ରରେ ବର୍ଣ୍ଣିତ ଅଛି ଯେ ମେରୁଦଣ୍ଡ ଭିତରେ ତିନୋଟି ନାଡ଼ି ଅଛି । ମଝି ନାଡ଼ିଟିର ନାମ ସୁଷୁମ୍ନା ନାଡ଼ି । ଯୋଗ ଦୃଷ୍ଟିରୁ ଏହାହିଁ ସର୍ବପ୍ରଧାନ ନାଡ଼ି । ସୁଷୁମ୍ନା ନାଡ଼ି ଦୁଇ ପାଖରେ ଥିବା ନାଡ଼ି ଦୁଇଟିର ନାମ ହେଉଛି ଇଡ଼ା ଓ ପିଙ୍ଗଳା । ନାଡ଼ି ତିନୋଟି ଗୁହ୍ୟ ଦ୍ୱାରଠାରୁ ମସ୍ତକ ପର୍ଯ୍ୟନ୍ତ ପାଖାପାଖି ହୋଇ ରହିଛି । ଏହି ସୁଷୁମ୍ନା ନାଡ଼ି ମଧ୍ୟ ଦେଇ ପ୍ରାଣ ଶକ୍ତିକୁ ଊର୍ଦ୍ଧ୍ୱକୁ ଉତ୍ତୋଳନ କରାଯାଏ । ସୁଷୁମ୍ନା ନାଡ଼ିରେ ଛଅଟି ଚକ୍ରର କଳ୍ପନା କରାଯାଇଛି । ସର୍ବନିମ୍ନ ଚକ୍ରରେ ଅବଧୃତ ପ୍ରାଣଶକ୍ତିକୁ କୁଣ୍ଡଳିନୀ ବୋଲି କୁହାଯାଇଥାଏ । ଏହା ସର୍ପାକାରରେ ଗୁଡ଼ାଇ ହୋଇଥାଏ । ଏହାର ମୁଖ ନିମ୍ନକୁ ହୋଇଥାଏ । ଯୋଗାଭ୍ୟାସ ଦ୍ୱାରା ବାହାରର ପ୍ରାଣବାୟୁକୁ ସର୍ବନିମ୍ନ ଚକ୍ର ସହିତ ସଂଯୁକ୍ତ କରାଇଲେ ତାହା ସଞ୍ଚଳିତ ହୋଇ ସୁଷୁମ୍ନା ନାଡ଼ି ମଧ୍ୟ ଦେଇ ଊର୍ଦ୍ଧ୍ୱକୁ ଆରୋହଣ କରେ । ଏହି ଛଅଟି ଚକ୍ରର ନାମ ହେଲା—(୧) ଗୁହ୍ୟଚକ୍ର ବା ମୂଳାଧାର ଚକ୍ର, (୨) ଲିଙ୍ଗ ବା ସ୍ୱାଧିଷ୍ଠାନ ଚକ୍ର, (୩) ନାଭି ବା ମଣିପୁର ଚକ୍ର, (୪) ହୃଦ ବା ଅନାହତ ଚକ୍ର, (୫) କଣ୍ଠ ବା ବିଶୁଦ୍ଧାଖ୍ୟ ଚକ୍ର, (୬) ଲଲାଟ ବା ଆଜ୍ଞା ଚକ୍ର । ଏହାଛଡ଼ା ମସ୍ତକର ଶୀର୍ଷଦେଶରେ ବ୍ରହ୍ମ ଚକ୍ର ବା ସହସ୍ରାରଚକ୍ର ଅବସ୍ଥିତ । ଏହା ବ୍ରହ୍ମରନ୍ଧ୍ରର ତଳକୁ ନିମ୍ନମୁଖୀ ହୋଇ ଓହଳିଛି । ଏହାର ଅନ୍ୟନାମ ଅଲେଖପାଟଣା ବା ମହାଶୂନ୍ୟପୁର । ପ୍ରତି ଚକ୍ରରେ ଗୋଟିଏ ଗୋଟିଏ ପଦ୍ମ, ପଦ୍ମର ନିର୍ଦ୍ଦିଷ୍ଟ ସଂଖ୍ୟକ ପାଖୁଡ଼ା, ପାଖୁଡ଼ାମାନଙ୍କରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଅକ୍ଷର ଏବଂ ପ୍ରତି ପଦ୍ମରେ ଦେବତାର କଳ୍ପନା କରାଯାଇଛି । ଏହି ଷଡ଼ଚକ୍ର

ଭେଦକରି କୁଣ୍ଡଳିନୀ ଯେତେବେଳେ ଆସି ବ୍ରହ୍ମ ବା ସହସ୍ରାର ଚକ୍ରରେ ପହଞ୍ଚେ ସେତେବେଳେ ସାଧକର ଚେତନାରେ ଅଦ୍ୱୟ ବ୍ରହ୍ମର ଜ୍ୟୋତି ପ୍ରତିଭାତ ହୁଏ । ଭୀମଭୋଇ ତାହାଙ୍କ ଭଜନମାଳାରେ ଏହି ଅଲେଖପାଟଣା ବା ସହସ୍ରାର ଚକ୍ରର ଉଲ୍ଲେଖ କରି ଅଛନ୍ତି—"ତାଳୁକା ଦୁଆର ଶିଖେ ଅଲେଖପୁର, ଅଖଣ୍ଡିତ ପରଂବ୍ରହ୍ମ ବଜେ ସେଠାର ।"

ବ୍ରହ୍ମନିରୂପଣ ଗୀତାରେ ସେ ଲେଖିଛନ୍ତି—

"ଗୋରୁ ଶିଙ୍ଗ ଅଗ୍ର ପ୍ରାୟ ତହିଁର ଆସ୍ଥାନ, ତାଳୁକା ଦୁଆର ଶିଗେ ଶିଶୁରନ୍ଧ୍ର ମୂଳ । ଫଣୀ ପରେ ମଣି ତହିଁ ନିର୍ଭା ହୋଇଅଛି । ସେ ଭିତରେ ଅଣରୂପ ବ୍ରହ୍ମ ଖେଳୁଅଛି ।

× × × ×

ଫୁଲ ଫୁଟିଅଛି ତହିଁ । ଫୁକା ମଣ୍ଡଳରେ ହୋଇଛି ଗ୍ରୁଇ,
ସୁମନରେ ଫଣୀ, ମଣି ଶିଖେ ସେହି,
ପବନ ମଣ୍ଡଳେ ବାସ । ପୂର୍ଣ୍ଣ ବ୍ରହ୍ମଟି ଅନାଦି ପୁରୁଷ ।।" (ଚଉତିଶାମାଳା)

× × × ×

"ଯେଉଁଠି ଜଳଧାର ସେହି ପରକାର ଯତ୍ନରେ ସୂକ୍ଷ୍ମକୁ ଧରି
ତହିଁ ଚୈତନ୍ୟ ଜୀବ ପରମକୁ ଭେଟାଭେଟି କରି ହରି ।।" (ସ୍ତୁତିଚିନ୍ତାମଣି)

ଏହାର ଅର୍ଥ ହେଉଛି—ଷଡ଼ଚକ୍ରରେ କୁଣ୍ଡଳିନୀ ରୂପ ସର୍ପକୁ ଆୟତ୍ତ କରି ଜାଗ୍ରତ କଲେ ଜୀବ ପରମର ମିଳନ ସମ୍ଭବପର ହେବ ।

ଏଥିରୁ ପ୍ରତୀତ ହୁଏ ଯେ ଶରୀରଭେଦ ବା ଘଟଯୋଗକୁ ଭୀମଭୋଇ ବ୍ରହ୍ମଜ୍ଞାନ ଭକ୍ତି-ଯୋଗର ଏକ ସାଧନ ରୂପେ ନିର୍ଦ୍ଦେଶ କରିଅଛନ୍ତି । ଓଡ଼ିଆ ପଞ୍ଚସଖା ସାହିତ୍ୟ ଓ ନାଥ ସାହିତ୍ୟରେ ମଧ୍ୟ ଶରୀରଭେଦର ଉପଯୋଗିତା ପ୍ରତିପାଦିତ ହୋଇଛି । ବ୍ରହ୍ମଜ୍ଞାନ ଭକ୍ତି ଯୋଗରେ ଚିତ୍ତର ସ୍ଥିରତା ଆନୟନ ନିମିତ୍ତ ଯୋଗର ଭୂମିକା ଅନସ୍ୱୀକାର୍ଯ୍ୟ ହେଲେ ମଧ୍ୟ ସତ୍ୟ ମହିମା ଧର୍ମରେ ଯୋଗର ଭୂମିକା ଗୌଣ ବୋଲି ବ୍ରହ୍ମାବଧୂତ ବିଶ୍ୱନାଥ ବାବାଙ୍କର ମତ । ବ୍ରହ୍ମଜ୍ଞାନ ଭକ୍ତିଯୋଗରେ ସିଦ୍ଧି ଲାଭପାଇଁ ଐକାନ୍ତିକ ଭକ୍ତି ଏବଂ ବ୍ରହ୍ମନାମ ଭଜନ ଯଥେଷ୍ଟ । ଭକ୍ତକବି ଭୀମଭୋଇ ଗୋଟିଏ ଦୁଇଟି ପଦରେ ଅତି ଚମତ୍କାର ଭାବରେ ଏହା ପ୍ରକାଶ କରିଅଛନ୍ତି—

"ଭସ୍ମକୁ ତେଜିଲେ ନିଷ୍ଠିସ୍ତ ବୁଝିଲେ ତେବେ ଅଛି ପୂର୍ଣ୍ଣକାମ ।
ଅନ୍ତ ଡାକୁଥିବ ଅଲେଖ ମହିମା ମୁଖ ଡାକୁଥିବ ନାମ ।।"

**ଅଣସାଧନା ମାର୍ଗ—**

ମହିମା ଧର୍ମର ସାଧନା ମାର୍ଗକୁ ଭୀମଭୋଇ ଅସାଧନା ବା ଅଣସାଧନା ମାର୍ଗ ବୋଲି ଅଭିହିତ କରିଅଛନ୍ତି—

ସେଠାବରେ ଆଉ ଦବାଜନିଶି ନାହିଁ ଏକଇ ପ୍ରକାର ବିଧି ।
ସେଠାବକୁ ଯେହୁ ମନ ବଳାଇବ ଅସାଧନା ସର୍ବସିଦ୍ଧି ।

ସାଧିବାର ବ୍ରହ୍ମ ବୁଝିଇ ସେ ପ୍ରଭୁ ଅନାମ ତାହାର ଗତ ।
କାମନା କଳନା କାହିଁକି ପଶିବ ନ ପଶିପାରେ ପ୍ରକୃତ ॥ (ସ୍ତୁ. ଚି. ୮୨ ବୋଲି)

ଏହାକୁ ଅସାଧନା ମାର୍ଗ ବୋଲି କହିବାର କାରଣ ହେଉଛି ଯେ ଏହି ସାଧନାରେ ଜପ, ତପ, ମନ୍ତ୍ର, ଯନ୍ତ୍ର, ତନ୍ତ୍ର ଓ ତୀର୍ଥବ୍ରତାଦିର କୌଣସି ପ୍ରୟୋଜନ ନାହିଁ । ଦ୍ୱିତୀୟରେ ଅଜପାମନ୍ତ୍ରକୁ ମଧ୍ୟ ଏହି ଧର୍ମରେ ଗ୍ରହଣକରାଯାଇଥାଏ । ଏହାକୁ ହଂସ ମନ୍ତ୍ର ମଧ୍ୟ କହନ୍ତି । ଶ୍ୱାସରେ ଏବଂ ପ୍ରଶ୍ୱାସରେ ହଂସଃ ଏହି ଅକ୍ଷର ଦ୍ୱୟ ଉଚ୍ଚାରିତ ହୁଏ । ଏହି ହଂସ ହିଁ ଆତ୍ମା ରୂପରେ ଦେହ ମଧ୍ୟରେ ଅବସ୍ଥିତ ଅଛନ୍ତି । କ୍ଷୁଧା ତୃଷାରେ ଛଟପଟ ହେଲାବେଳେ ଆମେ କହୁ ହଂସା ଉଡ଼ିଗଲା । ଏହି ହଂସ ମନ୍ତ୍ରର ଜପ ଦେହ ମଧ୍ୟରେ ଅହୋରାତ୍ର ଚାଲିଥାଏ । ଏହି ହଂସ ହିଁ ଆନନ୍ଦମୟୀ ପରମ ଦେବତା । ଏହି ଅଜପା ଭବପାଶମୋଚନର ହେତୁ ଅଟେ ।

"ହ ଅକ୍ଷର ମଦ୍ଧରଟି ଅଗ୍ନି ମଧ୍ୟେ ତେଜ, ଅରୁଣ ପରାୟେ ତହୁଁ ପେଲୁଅଛି ଝାଞ୍ଜି ।
ସ ଅକ୍ଷର ମଣ୍ଡଳ ଅତ୍ୟନ୍ତ ଶୀତଳ, ହସ୍ତ ଦୃଷ୍ଟି ନ ଗମଇ ପାଣିରୁ ପାତଳ ।"
(ବ୍ରୁ.ନ.ଗୀ. ୧୩ ଅଧ୍ୟାୟ)

"ନିରନ୍ତର ଭ୍ରମି କେ ପାରିବ ଗମି ନାସା ପବନଭଜନା ।
ଅନାଦି ଅଶେଷ ପ୍ରକାରେ ନ ମିଶି ଅବିକାରିତା ବାସନା ।। (ସ୍ତୁ. ଚି. ୧୯)

**ସନ୍ନ୍ୟାସ ପନ୍ଥା—**

ମହିମାଧର୍ମ ଏକ ସନ୍ନ୍ୟାସ ଆଧାରିତ ଧର୍ମ । ସନ୍ନ୍ୟାସ ଏହି ଧର୍ମର ପ୍ରାଣବିନ୍ଦୁ । ସନ୍ନ୍ୟାସୀ ସଂଘ ଏହି ଧର୍ମର ମେରୁଦଣ୍ଡ । ଏହି ଧର୍ମର ନୀତି, ନିୟମ ଓ ଆଚାର ପଦ୍ଧତି କେବଳ ସନ୍ନ୍ୟାସୀ ସଂଘ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ସନ୍ନ୍ୟାସୀ ସଂଘର ପରିଚାଳନା ପାଇଁ ମହିମା ସ୍ୱାମୀ କଠୋର ନିୟମମାନ ପ୍ରଣୟନ କରିଯାଇଛନ୍ତି । ଉକ୍ତ ନିୟମମାନ ଲଙ୍ଘନ କଲେ ସନ୍ନ୍ୟାସୀମାନଙ୍କୁ ଦଣ୍ଡିତ ଅଥବା ମହିମା ସମାଜରୁ ବହିଷ୍କୃତ ହେବାକୁ ପଡ଼ିଥାଏ । ସନ୍ନ୍ୟାସୀମାନଙ୍କୁ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଥାଏ; ଯଥା—(୧) ତ୍ୟାଗୀ ବୈରାଗୀ (୨) ଅପରସନ୍ନ୍ୟାସୀ (୩) ପରସନ୍ନ୍ୟାସୀ ।

ମହିମା ଧର୍ମର ସନ୍ନ୍ୟାସ ପନ୍ଥାରେ ଦୀକ୍ଷିତ ହେବାକୁ ହେଲେ ପ୍ରଥମେ ତ୍ୟାଗୀ ବୈରାଗୀ ଭାବରେ ମହିମାଧର୍ମର ଦୀକ୍ଷା ଗ୍ରହଣ କରିବାକୁ ହୁଏ । ଯେକୌଣସି ଜାତିର ଲୋକ ତ୍ୟାଗୀ ବୈରାଗୀ ଭାବରେ ଦୀକ୍ଷା ଗ୍ରହଣ କରିପାରିବେ । ବାଲ୍ୟ, ଯୌବନ ଓ ବାର୍ଦ୍ଧକ୍ୟ ଯେକୌଣସି ଅବସ୍ଥାରେ ଜଣେ ବ୍ୟକ୍ତି ମହିମାଧର୍ମର ସନ୍ନ୍ୟାସ ପନ୍ଥାରେ ଦୀକ୍ଷିତ ହୋଇପାରିବେ । ମହିମାଧର୍ମର ସନ୍ନ୍ୟାସ ପନ୍ଥାରେ ପ୍ରବେଶ କରିବା ପାଇଁ ଏକମାତ୍ର ଯୋଗ୍ୟତା ହେଉଛି ଗଭୀର ଈଶ୍ୱର ବିଶ୍ୱାସ ଏବଂ ସାଂସାରିକ ବିଷୟ ପ୍ରତି ବୈରାଗ୍ୟ । ତ୍ୟାଗୀ ବୈରାଗୀ ଗୈରିକ ବସ୍ତ୍ର ପରିଧାନ କରିବେ ଏବଂ ନିଷ୍କାମ ବୈରାଗ୍ୟ ପନ୍ଥାରେ କାଳଯାପନ କରିବେ । ସେ ବ୍ରହ୍ମଜ୍ଞାନ ଭକ୍ତିଯୋଗ ଅଭ୍ୟାସ କରିବେ ଏବଂ ମହିମା ସ୍ୱାମୀଙ୍କ ଉପଦେଶ ସମୂହ ଅକ୍ଷରେ ଅକ୍ଷରେ ପାଳନ

କରିବେ । କିଛି କାଳ ତ୍ୟାଗୀ ବୈରାଗୀ ଭାବରେ ଅତିବାହିତ କରିବାପରେ ତାହାଙ୍କର ଜ୍ଞାନ, ନିଷ୍ଠା, ଭକ୍ତି, ବୈରାଗ୍ୟ ଓ ଆଧ୍ୟାତ୍ମିକ ଅଗ୍ରଗତି ଆଦି ବିଷୟରକୁ ନେଇ ସିଦ୍ଧଗୁରୁଜନ ତାହାଙ୍କୁ ଡୋର କୌପୀନ ଧାରଣପୂର୍ବକ ଅପର ସନ୍ନ୍ୟାସୀ ହେବାକୁ ଅନୁମତି ଦେବେ । ଅପର ସନ୍ନ୍ୟାସୀଙ୍କର ନିୟମ, ନିଷ୍ଠା, ବୈରାଗ୍ୟ, ଆତ୍ମଜ୍ଞାନ, ବ୍ରହ୍ମାନୁଭୂତି ଓ ଧର୍ମପ୍ରଚାର ଦକ୍ଷତା ବିଷୟରକୁ ନେଇ ସିଦ୍ଧ ଅବଧୂତ ପର ସନ୍ନ୍ୟାସୀ ମଣ୍ଡଳ ତାହାଙ୍କୁ ଅବଧୂତ ପରସନ୍ନ୍ୟାସ ପନ୍ଥାରେ ଦୀକ୍ଷିତ ହେବାପାଇଁ ଅନୁମତି ଦେବେ । ପରସନ୍ନ୍ୟାସୀ କୁମ୍ଭୀପଟ୍ଟ ବା ବଲ୍‌କଲ ଧାରଣ କରିବେ ।

ସନ୍ନ୍ୟାସଜୀବନ ଏକ କଠୋର ଶୃଙ୍ଖଳାମୟ ଜୀବନ । ସନ୍ନ୍ୟାସୀ ଇନ୍ଦ୍ରିୟ ଜୟକରି ସକଳ ପ୍ରକାର ସାଂସାରିକ କାମନା ବାସନାଠାରୁ ଦୂରରେ ରହିବେ । ମହିମା ଧର୍ମ ପ୍ରଚାର, ଜଗତର କଲ୍ୟାଣ ସାଧନ ଓ ନିରନ୍ତର ବ୍ରହ୍ମଧ୍ୟାନ ହେବ ତାଙ୍କ ଜୀବନର ବ୍ରତ । ସେ ସମସ୍ତଙ୍କୁ ସମାନ ଭାବରେ ଦେଖିବେ ଏବଂ ସର୍ବତ୍ର ପରମାତ୍ମାଙ୍କ ଉପସ୍ଥିତି ଅନୁଭବ କରିବେ । କାମିନୀ କାଞ୍ଚନର ଚିନ୍ତା ତାଙ୍କ ଅନ୍ତରକୁ ସ୍ପର୍ଶ କରିବ ନାହିଁ । ସେ ଅନ୍ନଭିକ୍ଷା ଦ୍ୱାରା ଜୀବନ ଧାରଣ କରିବେ ଏବଂ ଧନସଞ୍ଚୟ ପ୍ରବୃତ୍ତିକୁ ହୃଦୟରେ ସ୍ଥାନ ଦେବେ ନାହିଁ । ସେ ପ୍ରତ୍ୟହ ପ୍ରାତଃ ଓ ସନ୍ଧ୍ୟା ବ୍ରାହ୍ମ ମୁହୂର୍ତ୍ତ ଶରଣ ଦର୍ଶନ କରିବେ । ସେ ଭୂମିରେ ଶୟନ କରିବେ ଏବଂ ସୂର୍ଯ୍ୟାସ୍ତ ପରେ ଭୋଜନ କରିବେ ନାହିଁ । ସେ କୌଣସି ଗ୍ରାମରେ ଏକ ରାତ୍ରିରୁ ଅଧିକ କାଳ ଅବସ୍ଥାନ କରିବେ ନାହିଁ । ସନ୍ନ୍ୟାସୀ ସ୍ତ୍ରୀ ଅଙ୍ଗ ସ୍ପର୍ଶ କରିବେ ନାହିଁ ଏବଂ କାମୋଦ୍ଦୀପକ ସକଳ ବିଷୟ ପରିହାର କରିବେ । ମହିମା ସନ୍ନ୍ୟାସୀ ଧର୍ମଦାଣ୍ଡରେ ନୂତନ ମୃତ୍ତିକା ପାତ୍ରରେ ଭୋଜନ କରିବେ । ସେ ଷଡ଼ରିପୁ ଦମନ କରି ସତ୍ୟ, ଅହିଂସା ଓ ବ୍ରହ୍ମଚର୍ଯ୍ୟରେ ଦୃଢ଼ ରହିବେ । ସଂସାରର ନିନ୍ଦା ଗାଳିକୁ ସହି ଜଗତର କଲ୍ୟାଣ ଓ ମହିମାଧର୍ମ ପ୍ରଚାର କରିବେ ।

## ଗୃହସ୍ଥ ଭକ୍ତ—

ମହିମା ଧର୍ମ ଏକ ସନ୍ନ୍ୟାସ ପ୍ରଧାନ ଧର୍ମ ହେଲେହେଁ ଏଥିରେ ଗୃହସ୍ଥ ଭକ୍ତର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ; କାରଣ ଗୃହସ୍ଥ ଭକ୍ତର ପୋଷକତା ବିନା ଧର୍ମର ପ୍ରଚାର ଓ ଅଗ୍ରଗତି ସମ୍ଭବପର ନୁହେଁ । ମହିମା ଧର୍ମର ମୂଳନୀତି ସନ୍ନ୍ୟାସୀ ତଥା ଗୃହୀମାନଙ୍କ ପାଇଁ ସମାନ । ଗୃହସ୍ଥ କେବଳ ଗୃହସ୍ଥାଶ୍ରମରେ ରହି ଉକ୍ତ ନିୟମଗୁଡ଼ିକ ପାଳନ କରିବେ । ମହିମା ଭକ୍ତ ଏକ ଅଦ୍ୱିତୀୟ ପରଂବ୍ରହ୍ମଙ୍କଠାରେ ଶରଣାପନ୍ନ ହେବେ । ଦେବାଳୟ ଗମନ, ଦେବଦର୍ଶନ ଓ ଦେବ ନିର୍ମାଲ୍ୟ ସେବନ ସେମାନଙ୍କ ପାଇଁ ନିଷିଦ୍ଧ । ମହିମା ଭକ୍ତ ଧନ, ଦାରା, ସୁତ, ବିତ୍ତ ଆଦି ନିଜର ସର୍ବସ୍ୱ ଅଲେଖ ପରଂବ୍ରହ୍ମଙ୍କ ପାଦପଦ୍ମରେ ଅର୍ପଣପୂର୍ବକ ନିଷ୍କାମଚିତ୍ତରେ ଜୀବିକା ନିର୍ବାହ କରିବେ । ସତ୍ୟ, ଅହିଂସା ଏବଂ ବ୍ରହ୍ମଚର୍ଯ୍ୟ ହେବ ତାଙ୍କ ଜୀବନର ନିୟାମକ । ଗୁରୁସେବା ହେବ ତାଙ୍କର ପ୍ରଧାନ କର୍ତ୍ତବ୍ୟ । ସେ ସତତ ବ୍ରହ୍ମନାମ ସ୍ମରଣ, ଭଜନ ଓ ଗାୟନରେ ଦିନାତିପାତ କରିବେ । କେବଳ ଋତୁ କାଳରେ ସେ ସ୍ତ୍ରୀ ସହବାସ

କରିବେ । ଅନ୍ୟ ସମୟରେ ସ୍ୱାମୀ ସ୍ତ୍ରୀ ଭାଇ ଭଉଣୀ ପରି ଚଳିବେ । ମହିମା ଭକ୍ତ ବର୍ଣ୍ଣ-ବୈଷମ୍ୟ ବା ଜାତିଭେଦକୁ ହୃଦୟରେ ସ୍ଥାନ ଦେବେ ନାହିଁ । ସମସ୍ତଙ୍କୁ ଏକ ମନେ କରିବେ ।

"କହୁ ତାହାର ମନରେ ନ ଧରିବ ଉଚ୍ଛିଷ୍ଟ ବୋଲି କରି ।
ଗୃହଧର୍ମ ବିଧି ଏମନ୍ତ ପ୍ରକାର ସତ୍ୟ ଧର୍ମେ ଯାନ୍ତି ତରି ॥"

ମହିମା ଭକ୍ତ ସଦାସର୍ବଦା ଗୁରୁସେବାରେ ଦୃଢ଼ ରହିବେ ଏବଂ ମହିମା ଧର୍ମର ସାଧୁ ସନ୍ନ୍ୟାସୀମାନଙ୍କୁ ପରମ ଆଦରର ସହିତ ଅନ୍ନ ଭିକ୍ଷା ପ୍ରଦାନ କରିବେ । ମହିମା ଭକ୍ତ ଷଡ଼ରିପୁ ଦମନ କରି ଶାନ୍ତି, ଶୀଳ, ଦୟା ଓ କ୍ଷମା ଆଚରଣରେ ବ୍ରତୀ ହେବେ । ସେ ପ୍ରତ୍ୟହ ପ୍ରତ୍ୟୁଷରେ ଦେହରେ ଗୋମୟ ଲଗାଇ ସ୍ନାନ କରିବେ ଏବଂ ଗୋମୟ ମିଶ୍ରିତ ଜଳ ପାନ କରିବେ । ସେ ପ୍ରାତଃ ଓ ସାୟାହ୍ନର ବ୍ରାହ୍ମମୁହୂର୍ତ୍ତରେ ବ୍ରହ୍ମଶରଣ ଦର୍ଶନ କରିବେ ଏବଂ ସୂର୍ଯ୍ୟାସ୍ତ ପରେ ଭୋଜନ କରିବେ ନାହିଁ । ନାମଭଜନ, ହରିନାମ ଶ୍ରବଣ ଓ ଗାୟନରେ ରାତ୍ରି ଅତିବାହିତ କରି ଯଥା ସମୟରେ ଶୟନ କରିବେ ।

## ମହିମାଧର୍ମର ଶ୍ରେଷ୍ଠତା—

ଭୀମଭୋଇଙ୍କ ମତରେ ମହିମା ଦୀକ୍ଷା ସବୁଠାରୁ ବଡ଼ ଅଟେ । ଏହା ଶୈବ, ବୈଷ୍ଣବ ଓ ବୈଦିକ ଧର୍ମମାର୍ଗଠାରୁ ଉନ୍ନତର । କାରଣ ଏଥିରେ କେବଳ ନିର୍ଗୁଣ, ନିର୍ବିକଳ୍ପ ଅଦ୍ୱୟ ପରଂବ୍ରହ୍ମଙ୍କ ଉପାସନା କରାଯାଇଥାଏ । ବୌଦ୍ଧଧର୍ମର ଶୂନ୍ୟବାଦ, ଯୋଗାଚାର୍ଯ୍ୟ ମାନଙ୍କର ବଞ୍ଚନବାଦ ଏବଂ ବୌଦ୍ଧସିଦ୍ଧାଚାର୍ଯ୍ୟମାନଙ୍କଦ୍ୱାରା ଅନୁସୃତ ସହଜଯାନଠାରୁ ଏହା ଉତ୍କୃଷ୍ଟ । କାରଣ ଏଥିରେ ଏକ ଅଦ୍ୱୟ ଅଲେଖ ପରଂବ୍ରହ୍ମଙ୍କର ଉପାସନା ଯେପରି ସ୍ପଷ୍ଟ ସେ ସବୁ ଧର୍ମରେ ସେପରି ନୁହେଁ । ବେଦାନ୍ତବାଦଠାରୁ ମଧ୍ୟ ଏହା ବଡ଼ । କାରଣ ଏଥିରେ ବେଦବହିତ ବାହ୍ୟବିଚାରମୂଳକ ବର୍ଣ୍ଣ ବ୍ୟବସ୍ଥା ଗୃହୀତ ହୁଏ ନାହିଁ ଏବଂ ପୂଜା, ଅର୍ଚ୍ଚନା ଓ ମନ୍ତ୍ରଜପ ଆଦି ଅନୁସୃତ ହୁଏ ନାହିଁ ।

"ନାଗାନ୍ତ ଯୋଗାନ୍ତ ଦୀକ୍ଷା ନୋହେ ଏହୁ ତହିଁରୁ ଅଧିକ ଅଂଶ ।
ନିଷ୍କାମ ଧର୍ମ ଯେଉଁଠାରୁ ଝରୁଛି ଅନନ୍ତ ପରି ବୈକୁଣ୍ଠ ॥"
ବେଦାନ୍ତୀ ସିଦ୍ଧାନ୍ତୀ ଦୀକ୍ଷା ନୋହେ ରହିଲଣି କେତେ ଦୂରେ ।
ନିର୍ବେଦ ଧାରଣା ଯାହାକୁ ବୋଲନ୍ତି ଅଲେଖ ଅବଧୂତ ପୁରେ ॥

(ସ୍ତୁ. ଚି.୮୭ ବୋଲି)

## ସାର୍ବଜନୀନ ଗଣଧର୍ମ—

ଜାତି, ବର୍ଣ୍ଣ, ପଦପଦବୀ, ବୃତ୍ତି, ସ୍ତ୍ରୀ, ପୁରୁଷ ନିର୍ବିଶେଷରେ ଏହି ଧର୍ମର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ଏହାର ସାଧନ ମାର୍ଗ ମଧ୍ୟ ସୁଗମ, ସହଜ ଏବଂ ସମସ୍ତଙ୍କ ପକ୍ଷରେ

ଗ୍ରହଣୀୟ । ତେଣୁ ଏହା ଏକ ସାର୍ବଜନୀନ ଗଣଧର୍ମ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭୀମ ଭୋଇ ଏ ପ୍ରସଙ୍ଗରେ କହିଛନ୍ତି—

"ବେଦାନ୍ତ ବ୍ରାହ୍ମଣ ହୋଇଥାଉ ପଛେ ଅଲେଖ ମହିମା ଭଜୁ ।
ବେଦମତେ ଯେତେ କର୍ମ କରୁଛୁ ବାହାରେ ପଛେ ନ ତେଜୁ ॥
ବ୍ରାହ୍ମଣ ହୋଇଣ ଗୁରୁ ସେବା କରୁ ବ୍ରହ୍ମକୁ ପରତେ ହୋଇ ।
ସତ୍ୟ ଧର୍ମକୁ ଆଶ୍ରା କରିଥିଲେ ନିଶ୍ଚୟ ତରିବ ସେହି ॥
ବ୍ୟାଧ ହୋଇ ଯେବେ ଜୀବନସବୃତ୍ତି ଜୀବ ବଧୁଥାଉ ପଛେ ।
ଅଲେଖ ମହିମା ଭଜୁଥାଉ ଏକା ଦୃଢ଼ କରିଥାଉ ନିଷ୍ଠେ ॥

× × ×

ଧୀବର ହୋଇଣ ମୀନ ମାରୁ ପଛେ ମହିମାକୁ ଥାଉ ଧ୍ୟାୟି ।
ତାହାର ବୃତ୍ତି ତାକୁ ଦଅହୋଇଛୁ କେମନ୍ତେ ଛାଡ଼ିବ ସେହି ॥
ମୋଚି ହୋଇ ଚର୍ମ କାଟୁଥାଉ ପଛେ ନାମରେ ଆଶ୍ରିତ ହେଉ ।
ତାହାର ବୃତ୍ତି ସେ କେମନ୍ତେ ଛାଡ଼ିବ ରୋଜଗାର କରୁଥାଉ ॥
ହାଡ଼ି ହୋଇ ଯେବେ ଦାଣ୍ଡ ପହଁରଇ ବାଡ଼ିଘର ପଛେ ଖଟୁ ।
ଗୁରୁପାଦ ତଳେ ଚିତ୍ତ ବୃତ୍ତି ରଖି ଦୃଢ଼ ଚିତ୍ତେ ନାମ ରଟୁ ॥

× × ×

ଅଘୋର ନିଷ୍ଠା ଜଗତରେ ଯେ ଜନ ଅମନେ କରିବ ମନ ।
ଆସୁର ନାହିଁ ଅଲେଖ ପୁରୁଷର ହେବେ ତାହାର ଅଧୀନ ॥
କିବା ନରଲୋକ କିବା ଦେବଲୋକ କରୁଛନ୍ତି ଭକ୍ତ ଦେଖ ।
କିବା ସୁରଲୋକ କିବା ରୁଦ୍ରଲୋକ ଯେ ଅଛନ୍ତି ତିନ ତ୍ରୈଲୋକ୍ୟ ॥

× × ×

ଅଚ୍ୟୁତ ଶୂନ୍ୟ ଅଗୋଚର ଆଶା ଭରସା ଯେ କରିପାରେ ।
ଅନ୍ତର ବାହାରେ ସେ ଅଲେଖ ବ୍ରହ୍ମ ପୂରିଥାଇ ତାହାଠାରେ ॥"

---

# ଗ୍ରନ୍ଥରଚନା ଓ କବିତ୍ୱ

ଭୀମଭୋଇଙ୍କର ଅନନ୍ୟ କବି ପ୍ରତିଭାର ସ୍ୱାକ୍ଷର ଓଡ଼ିଆ ସାହିତ୍ୟର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ ହୋଇ ରହିଅଛି । ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ ଅତୁଳନୀୟ । ଭୀମଭୋଇଙ୍କର କବିତ୍ୱ ବିଧିଦତ୍ତ ବୋଲି କୁହାଯାଏ । ମହିମା ସ୍ୱାମୀଙ୍କର ଅପାର କରୁଣାରୁ ସେ ଅସାମାନ୍ୟ କବିତ୍ୱ ଶକ୍ତିର ଅଧିକାରୀ ହୋଇଥିଲେ । ଏ ବିଷୟ ଭୀମଭୋଇ ତାହାଙ୍କ ରଚନାମାନଙ୍କରେ ବହୁ ସ୍ଥଳରେ ପ୍ରକାଶ କରିଅଛନ୍ତି ।

"ଜନମ କାଳରୁ ମୂର୍ଖ ମୁଁ ହୋଇଥିଲି, ଷୋଳ ବରଷରେ କବି ମୁଁ କୃତ୍ୟ କଲି ।
ଯେତେବେଳେ ଗୁରୁ ଯେ ଦ୍ୟନ୍ତି ଭେଦ, ତେଣୁ ସେ ଯୋଡ଼ଇ କବି ଯେ କୃତ୍ୟ ପଦ ।
ଗୁରୁ ନ କହିଲେ ମୋତେ ନ ଆସଇ, ଶ୍ରୀଗୁରୁ ବ୍ୟତୀତେ ଅନ୍ୟ ଯେ ଅଛି ନାହିଁ ।।

ମହିମା ସ୍ୱାମୀଙ୍କ ଆଦେଶ ଅନୁସାରେ ସେ କବିତା ମାଧ୍ୟମରେ ମହିମା ଧର୍ମର ପ୍ରଚାର ଓ ପ୍ରସାରକୁ ନିଜ ଜୀବନର ବ୍ରତ ଭାବରେ ଗ୍ରହଣ କରିନେଇଥିଲେ । ସେ ତାଙ୍କର ସ୍ତୁତି, ଜଣାଣ ଓ ଭଜନାଦି ରଚନା କରିସାରିବା ପରେ ସେଗୁଡ଼ିକୁ ପ୍ରଥମେ ମହିମାସ୍ୱାମୀଙ୍କ ନିକଟକୁ ପଠାଇ ଦେଉଥିଲେ । ସେଗୁଡ଼ିକ ପ୍ରଥମେ ମହିମା ସ୍ୱାମୀଙ୍କ ନିକଟରେ ଗାନ କରାଯାଉଥିଲା ଏବଂ ସାଧୁସନ୍ଥମାନେ ତାହା ନେଇ ଗ୍ରାମ ଗ୍ରାମାନ୍ତରରେ ପ୍ରଚାର କରୁଥିଲେ । ଏ ବିଷୟ ଭୀମଭୋଇ ତାଙ୍କର ଭଜନ ଓ ଚଉତିଶାମାନଙ୍କରେ ପ୍ରକାଶ କରିଅଛନ୍ତି । ଭୀମଭୋଇଙ୍କ କଣ୍ଠରୁ କବିତା ସ୍ୱତଃସ୍ଫୂର୍ତ୍ତି ଭାବରେ ନିର୍ଗତ ହେଉଥିଲା । ସେ ଏକ ସମୟରେ ଏକ ତୁଣ୍ଡରେ ଦୁଇଗୋଟି ଲେଖାଏଁ ଭଜନ ରଚନା କରୁଥିଲେ ଏବଂ ତାହା ତାଳପତ୍ର ଖେଦାରେ ଲେଖି ନେବାପାଇଁ ତାଙ୍କ ନିକଟରେ ଚାରିଜଣ ଲିପିକାର ନିଯୁକ୍ତ ଥିଲେ ।

ଭୀମଭୋଇଙ୍କର ଗ୍ରନ୍ଥ ଓ ରଚନା ସଂଖ୍ୟା ଏ ପର୍ଯ୍ୟନ୍ତ ସଠିକ ଭାବରେ ଜଣା ଯାଇନାହିଁ । ତାଙ୍କର ବହୁ ସ୍ତୁତି, ଜଣାଣ ଓ ଭଜନ ଏ ପର୍ଯ୍ୟନ୍ତ ପ୍ରକାଶିତ ହୋଇନାହିଁ ବୋଲି ଜଣାଯାଏ । ଭୀମଭୋଇଙ୍କ ରଚିତ ଗ୍ରନ୍ଥମାନଙ୍କ ମଧ୍ୟରେ ସ୍ତୁତିଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା, ଆଦିଅନ୍ତ ଗୀତା, ଶ୍ରୁତିନିଷେଧ ଗୀତା, ନିର୍ବେଦ ସାଧନ ଏବଂ ଅଷ୍ଟକବିହାରୀ ଗୀତା ପ୍ରଧାନ । ଏହାଛଡ଼ା ତାଙ୍କର ୩୧୦ଟି ଭଜନ ଓ ୪୧ଟି ଚଉତିଶା ପ୍ରକାଶିତ ହୋଇଅଛି । ନଗେନ୍ଦ୍ର ନାଥ ବସୁ ତାହାଙ୍କ ରଚିତ Modern Buddhism in Orissa and its followers" ନାମକ ପୁସ୍ତକରେ ଭୀମଭୋଇଙ୍କ ବିରଚିତ "କଳିଭାଗବତ" ଗ୍ରନ୍ଥରୁ କେତେକ ଅଂଶ ଉଦ୍ଧାର କରିଛନ୍ତି । କିନ୍ତୁ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ବହୁ ଯୁକ୍ତି ଦର୍ଶାଇ ପ୍ରମାଣ କରିଛନ୍ତି ଯେ ତାହା ଭୀମଭୋଇଙ୍କ ରଚନା ନୁହେଁ । 'ପଦ୍ମକଳ୍ପ' ଓ 'ବ୍ରହ୍ମଚୂଳକ' ଭୀମଭୋଇଙ୍କ ଭଣିତାଯୁକ୍ତ ଦୁଇଟି ପୁସ୍ତକ ଦେଖିବାକୁ ମିଳେ । କିନ୍ତୁ

ତତ୍ତ୍ୱବିଦମାନଙ୍କ ମତରେ ସେ ଦୁଇଟି ରଚନା ଭୀମଭୋଇଙ୍କ କୃତ ନୁହେଁ । ଅନ୍ୟ କେହି ବ୍ୟକ୍ତି ଭୀମଭୋଇଙ୍କ ଭଣିତା ଦେଇ ଗ୍ରନ୍ଥ ଦୁଇଟି ରଚନା କରିଛନ୍ତି ।

ଓଡ଼ିଆ ଭାଷା ଛଡ଼ା ଭୀମଭୋଇ ସଂସ୍କୃତରେ 'ମନୁସଭା ମଣ୍ଡଳ' ଓ ବଙ୍ଗଳାରେ 'ମହିମା ବିନୋଦ' ନାମକ ଗ୍ରନ୍ଥ ରଚନା କରିଥିବା ଜଣାଯାଏ ।

**ସ୍ତୁତିଚିନ୍ତାମଣି—**

ସ୍ତୁତିଚିନ୍ତାମଣି ଭୀମଭୋଇଙ୍କର ସର୍ବପ୍ରଧାନ ଓ ସର୍ବପ୍ରଥମ କାବ୍ୟ ।

"ଗୀତା ସାରସ୍ୱତ କରି ପଦ ଅର୍ଥ ଭୀମ ଅରକ୍ଷିତ ଭଣି ।
ଏ ସାହାସ୍ର ଆଦ୍ୟ ବିଚିନ୍ତ ବୃତ୍ତାନ୍ତ ନାମ ସ୍ତୁତିଚିନ୍ତାମଣି ।।"

ଏଥିରେ ଚିନ୍ତାର୍ଥୀଜନ ଚିନ୍ତାମଣି ଅଲେଖ ପରଂବ୍ରହ୍ମଙ୍କର ସ୍ତୁତି କରାଯାଇଥିବାରୁ ଏହାର ନାମ 'ସ୍ତୁତିଚିନ୍ତାମଣି' ରଖାଯାଇଛି । ଏହି ନାମକରଣ ଆମକୁ ଅଭିମନ୍ୟୁ ସାମନ୍ତସିଂହାରଙ୍କ ବିଦଗ୍ଧ ଚିନ୍ତାମଣି ଗ୍ରନ୍ଥର ନାମ ସ୍ମରଣ କରାଇ ଦିଏ । ଭୀମଭୋଇ ଉଲ୍ଲେଖ କରିଛନ୍ତି ଯେ ତାହାଙ୍କ ଦୀକ୍ଷା ଗ୍ରହଣର ଚାରିବର୍ଷ ପରେ ଏହି ଗ୍ରନ୍ଥ ରଚିତ ହୋଇଥିଲା । ତେଣୁ ଏହା ୧୮୬୬-୬୭ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିବା ସମ୍ଭବ । ଏହା ୧୦୦ଟି ବୋଲିରେ ବିଭକ୍ତ ଏବଂ ପ୍ରତ୍ୟେକଟି ବୋଲିର ପଦସଂଖ୍ୟା କୋଡ଼ିଏ । ଭୀମଭୋଇ ଏହି ଗ୍ରନ୍ଥରେ ନିଜର ବାଲ୍ୟ ଓ କୈଶୋର ଜୀବନର ଦୁଃଖମୟ କାହାଣୀ ଅତ୍ୟନ୍ତ ମର୍ମସ୍ପର୍ଶୀ ଭାଷାରେ ବ୍ୟକ୍ତ କରିଅଛନ୍ତି । ମହିମା ସ୍ୱାମୀଙ୍କ ଆବିର୍ଭାବ, କପିଳାସରେ ଅସ୍ତସମାଧି ଯୋଗ, ଧର୍ମ ପ୍ରଚାର ଓ ଖେଳାଲୀଳା ଏହି ଗ୍ରନ୍ଥର ଏକ ମୁଖ୍ୟ ବିଷୟ । ଏହି ପ୍ରସଙ୍ଗରେ ସେ ଅଲେଖ ପରଂବ୍ରହ୍ମଙ୍କ ସ୍ୱରୂପ ନିରୂପଣ, ସୃଷ୍ଟିତତ୍ତ୍ୱ, ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱ, ବ୍ରହ୍ମଜ୍ଞାନ ଭକ୍ତି ଯୋଗ, ଶରୀରଭେଦ, ଅଷ୍ଟାଙ୍ଗଯୋଗ, ମହିମାଧର୍ମର ନୀତି ନିୟମ, ଆଚାର ପଦ୍ଧତି, ସନ୍ନ୍ୟାସ ଓ ଗୃହସ୍ଥ ମାନଙ୍କର ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ମହିମାଧର୍ମ ପ୍ରଚାରରେ ବ୍ରତୀ ହୋଇ ସେ କିପରି ଅପମାନିତ, ଅତ୍ୟାଚରିତ ଓ ନିର୍ଯାତିତ ହୋଇଛନ୍ତି ତାର ଏକ ଜୀବନ୍ତ ଚିତ୍ର ମଧ୍ୟ ସେ ପ୍ରଦାନ କରିଛନ୍ତି । ସମସାମୟିକ ସମାଜର ଅଧର୍ମ, ଅନ୍ୟାୟ, ଅନାଚାର ଓ ନୀତିହୀନତା ପ୍ରତି ଦୃଷ୍ଟି ଆକର୍ଷଣ କରି ଏଥିରୁ ରକ୍ଷା କରିବା ପାଇଁ ଅଲେଖ ପରଂବ୍ରହ୍ମଙ୍କଠାରେ କାତର ନିବେଦନ ଜଣାଇଛନ୍ତି । ଗ୍ରନ୍ଥ ଶେଷରେ ସେ କଳିକଳୁଷ ନିବାରଣ ପାଇଁ ସମସ୍ତଙ୍କୁ ଅଲେଖ ମହିମାଙ୍କର ଅଭୟ ପାଦପଦ୍ମରେ ଆଶ୍ରୟ ଗ୍ରହଣ କରିବା ପାଇଁ ଆହ୍ୱାନ ଦେଇଅଛନ୍ତି ।

"ଡାକ ଦେଉଅଛୁ ତିନିପୁର ମଧ୍ୟେ ଅଲେଖ ମହିମା ଭଜ ।
ଦେଖ କଳିପୁର ଯୋଡି ଆସୁଅଛୁ ବେଦ କର୍ଣ୍ଣେ ଶୁଣି ବୁଝ ।।
ଆହେ ନରଲୋକ ଯେ ଅଛ ସଂସାରେ ଦେହଧାରୀ ହୋଇ ମର୍ତ୍ତ୍ୟେ ।
ଅଲେଖ ମହିମା ସାଗର ନାମକୁ ଭଜନ କର ସମସ୍ତେ ।।

'ସ୍ତୁତିଚିନ୍ତାମଣି' ଏକ ଅଧ୍ୟାତ୍ମ ତତ୍ତ୍ୱ ସମ୍ବଳିତ ଗ୍ରନ୍ଥ ହେଲେହେଁ ଏହା ଅଭୂତପୂର୍ବ ଭାବରେ ରସୋତ୍ତୀର୍ଣ୍ଣ ହୋଇଅଛି । ଏହା ପାଠକଲାବେଳେ ହୃଦୟ ଅପୂର୍ବ ଭକ୍ତିରସରେ ପରିପ୍ଲୁତ ହୁଏ ଏବଂ ଦୁଃଖ ଓ ନୈରାଶ୍ୟର ଘନଘଟା ଦୂର ହୋଇ ଅନ୍ତରରେ ଶୁଭ ଆଶାବାଦ ଓ ଦିବ୍ୟ ଶାନ୍ତରସର ସଞ୍ଚାର ହୁଏ । 'ସ୍ତୁତିଚିନ୍ତାମଣି'ର ଭକ୍ତି ମୁଖ୍ୟତଃ ଦାସ୍ୟଭକ୍ତି । ସ୍ଥଳବିଶେଷରେ ସଖ୍ୟ ଓ ବାତ୍ସଲ୍ୟଭକ୍ତିର ବର୍ଣ୍ଣନା ମଧ୍ୟ ଦୃଷ୍ଟ ହୁଏ । କବିଙ୍କର ଅନନ୍ୟ ଭକ୍ତିମନ୍ତ୍ର ପାଠକ ଓ ଶ୍ରୋତାର ପ୍ରାଣକୁ ଗଭୀର ଭାବରେ ସ୍ପର୍ଶ କରେ । ଭକ୍ତି ଭାବରେ ବିହ୍ୱଳ ହୋଇ ସେ କେତେବେଳେ ମହିମାସ୍ୱାମୀଙ୍କର ଚରଣକମଳରେ ନିଜର ସର୍ବସ୍ୱ ଅର୍ପଣ କରି ଶରଣ ଭିକ୍ଷା କରିଛନ୍ତି ତ କେତେବେଳେ ଅଭିମାନବଶ ଅଲେଖ ମହାପ୍ରଭୁଙ୍କ ନିକଟରେ ଅଭିଯୋଗ ଉପସ୍ଥାପିତ କରିଛନ୍ତି ଏବଂ ଆଉ କେତେବେଳେ କ୍ରୋଧରେ ଜର୍ଜରିତ ହୋଇ ପରଂବ୍ରହ୍ମଙ୍କୁ ତିରସ୍କାର ଓ ଭର୍ତ୍ସନା କରିଛନ୍ତି । ପୁଣି ଅନ୍ୟ କେତେବେଳେ ସ୍ୱକୃତ ଅପରାଧ ପାଇଁ ଶ୍ରୀଗୁରୁଚରଣରେ ଆକୁଳ ହୃଦୟରେ କ୍ଷମା ପ୍ରାର୍ଥନା କରିଛନ୍ତି । ଏକ ଅଖଣ୍ଡ ବିଶ୍ୱବୋଧରେ ଅନୁପ୍ରେରିତ ହୋଇ କବି ଗାଇଉଠିଛନ୍ତି—

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଜାଣିଜାଣି କେବା ସହୁ ।
ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ॥

ଜଗତର ନିର୍ଯାତିତ, ନିପୀଡ଼ିତ ଓ ଦୁଃଖଦୁର୍ଦ୍ଦଶାଗ୍ରସ୍ତ ଜନତାର ଜୀବନ ସହିତ ନିଜକୁ ଏକାକାର କରିଦେଇ ସେ କହିଛନ୍ତି—

"ଏକା ଖଡ଼ଗରେ ଦଶ ପାଞ୍ଚ ମୁଣ୍ଡ ଛିଡ଼ଇ ଭରତ ଯୁଝେ ।
ଆରେକ ଅଙ୍ଗକୁ ପଦ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ ॥"

ଭୀମଭୋଇଙ୍କର ଏହି ମହୋଦାର ମାନବିକତା କେବଳ ଓଡ଼ିଆ ସାହିତ୍ୟ ନୁହେଁ ବିଶ୍ୱର ଯେକୌଣସି ସାହିତ୍ୟର ଶିରୋଭୂଷଣ ରୂପେ ତାର ଶୋଭାବର୍ଦ୍ଧନ କରିବ, ଏଥିରେ ସନ୍ଦେହ ନାହିଁ । ଭୀମଭୋଇଙ୍କର ରଚନାଶୈଳୀ ଅତ୍ୟନ୍ତ ସରଳ ଏବଂ ହୃଦୟଗ୍ରାହୀ । ଏଥିରେ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ଘନଘଟା ନାହିଁ କିମ୍ବା ମଣ୍ଡନର ପ୍ରୟାସ ନାହିଁ । ଏହାକୁ ପାଠ କଲାବେଳେ ମନେହୁଏ ଯେପରି ଭକ୍ତପ୍ରାଣ ଭୀମଭୋଇଙ୍କର ହୃଦୟ ଧାରୁ ବିଗଳିତ ହୋଇ କବିତା ଆକାରରେ ବୋହିଯାଇଛି । ସେଥିପାଇଁ ଏହା ପାଠକର ପ୍ରାଣକୁ ଅତି ନିବିଡ଼ ଭାବରେ ସ୍ପର୍ଶ କରେ । ସ୍ତୁତିଚିନ୍ତାମଣିର ପଦଯୋଜନା ଓ ବସ୍ତୁ ବିନ୍ୟାସ ଅତ୍ୟନ୍ତ ସରଳ, ଭାବଗର୍ଭକ, ଆବେଗମୁଖର ଓ ସାବଲୀଳ । ଏହାର ପ୍ରତ୍ୟେକଟି ପଦ ଜୀବନରସରେ ଟଳଟଳ ଓ ବାସ୍ତବ ଜୀବନର ଲୋହିତ ସ୍ପର୍ଶରେ ଅରୁଣିତ । କବି ପ୍ରାତ୍ୟହିକ ଜୀବନରୁ ଉପାଦାନ ସଂଗ୍ରହ କରି ତାଙ୍କର କବିତାଗୁଡ଼ିକୁ ଅପୂର୍ବ ସଜାରେ ସଜାଇଛନ୍ତି ।

"ନିରନ୍ତରେ ଭଗ୍ନ କରିଅଛି ବିଘ୍ନ ଅସ୍ଥି ମାଂସ କରି ଲେଶ ।
ସମସ୍ତ ଲୋକ ମଙ୍ଗଳ ପାଇଲେ ମୋ ଭାରେ ପଡ଼ନ୍ତୁ କଷ୍ଟ ।

ପ୍ରସାରନ୍ତେ ଅଣ୍ଟି ତୋଳିଦେଲେ ବାଂଣ୍ଟି ପାଇଲେ ସାଣଆ ପଡ଼ା ।
ଥିଲା ମୋ କର୍ମରେ ପୁଟ ଅଧର୍ମରେ ଖୁଦ ମଳୁଖାଦ ଗୋଡ଼ା ।।

× × ×

ରଙ୍ଗ କଳାଧଳା ଏକାଠି ମିଶିଲା ଝାଁବୋଡ଼ା ହୋଇଛି ଧାନ ।
ଭିନ୍ନ ଭିନ୍ନ କରି ପକାଇବେ ବାଛି ଗୁରୁଦେବ ଧନ୍ୟ ଧନ୍ୟ ।।

## ବ୍ରହ୍ମନିରୂପଣ ଗୀତା

ଗ୍ରନ୍ଥର ନାମକରଣରୁ ଏହାର ବିଷୟବସ୍ତୁର ସୂଚନା ମିଳିଥାଏ । ଏହା ଏକ ତତ୍ତ୍ୱମୂଳକ ଗ୍ରନ୍ଥ । ଏଥିରେ ଶୂନ୍ୟପୁରୁଷ ଅଲେଖ ପରଂବ୍ରହ୍ମଙ୍କର ସ୍ୱରୂପ ବ୍ୟାଖ୍ୟା କରାଯାଇଛି । ଶ୍ରୀମଦ୍‌ଭଗବଦ୍ ଗୀତାର କୃଷ୍ଣାର୍ଜୁନ ସମ୍ବାଦ ପରି ଏହା ଗୁରୁ ଶିଷ୍ୟ ସମ୍ବାଦ ଆକାରରେ ରଚିତ ହୋଇଛି । ଏଥିରେ ପ୍ରଶ୍ନକର୍ତ୍ତା ହେଉଛନ୍ତି ନବିକାର ଏବଂ ଉତ୍ତରଦାତା ହେଉଛନ୍ତି ଅନାଦି ପୁରୁଷ । ପରଂବ୍ରହ୍ମ ବିଶ୍ୱଭୁବନର ସର୍ବତ୍ର ସମାନ ଭାବରେ ପୂରି ରହିଛନ୍ତି । ବିଶ୍ୱ ସୃଷ୍ଟିରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ସେ ନାହାନ୍ତି । ସେ ସର୍ବଜ୍ଞ, ସର୍ବନିୟାମକ ଓ ସର୍ବକାରଣର କାରଣ ସୃଷ୍ଟି, ସ୍ଥିତି, ଲୟ, ଜନ୍ମ ମରଣ, ଜ୍ଞାନ ଅଜ୍ଞାନ, ପାପପୁଣ୍ୟ, ଧର୍ମ ଅଧର୍ମ, ସତ୍ୟ ମିଥ୍ୟା, ଭଲମନ୍ଦ, ହାନିଲାଭ ସକଳ ବିଷୟର କାରଣ ସେହି ଏକ ଅଦ୍ୱୟ ପରଂବ୍ରହ୍ମ । ପରମଙ୍କର ରୂପ ନାହିଁ, ଗୁଣ ନାହିଁ, ନାମ ନାହିଁ, ଆକାର ନାହିଁ । ସେ ନିର୍ଗୁଣ, ନିରଞ୍ଜନ, ନିର୍ବିକାର ଓ ନିର୍ବିକଳ୍ପ । ସେ ନିଃଶବ୍ଦ, ଅଣାକ୍ଷର ଓ ମହାଶୂନ୍ୟ ।

ମହାଶୂନ୍ୟ ସେ ଶୂନ୍ୟ ସେ ନିର୍ଗୁଣ ଶରୀର, ଏକାକ୍ଷର ନ ବସଇ ବସେ ଅଣାକ୍ଷର ।
ଅଣାକ୍ଷର ଅଣମାତ୍ରା ଅଣନିଶବଦ, ଶବଦର ଭେଦ ନାହିଁ ବ୍ରହ୍ମ ନିଜ ପଦ ।।

ମହାଶୂନ୍ୟ ହୋଇ ମଧ୍ୟ ସେ ପୂର୍ଣ୍ଣବ୍ରହ୍ମ ।

"ଅଖଣ୍ଡିତ ବ୍ରହ୍ମ ସେ ଯେ ଗୋଟା ହୋଇଅଛି ।
କିଛି ଊଣାନାହିଁ ତାର ପୂର୍ଣ୍ଣ ରହିଅଛି ।।
ଶୂନ୍ୟ ମହାଶୂନ୍ୟ ବୋଲି ତାହାକୁଟି କହି ।
ତାଙ୍କ ଉପରକୁ ଆଉ ବଡ଼ ନାହିଁ କେହି ।।

ପରଂବ୍ରହ୍ମ ଅବାଙ୍‌ମାନସଗୋଚର । ତେଣୁ ତାଙ୍କୁ ବିରୋଧାତ୍ମକ ଦ୍ୱାରାହିଁ ପ୍ରକାଶ କରାଯାଇପାରେ ।

"ଆପଣେ ମହା ନିଷ୍କାମ ଆପଣେ ସକାମ,
ଆପେ ଅନାମିକ ବ୍ରହ୍ମ ଆପେ ବହେ ନାମ ।
ଆପେ ଧର୍ମ କରୁଥାଇ ଆପଣେ ଖରାପ ।
ଆପେ ଦ୍ରୋହ କରୁଥାଇ ଆପେ ଦଏ ଶାପ ।।

ଆପେ କର୍ମ କରୁଥାଇ ଆପେ ହୋଇ ଭ୍ରମ ।
ଆପେ କାଳରୂପେ ପୀଡ଼େ ଆପେ ହୋଏ ଯମ ॥

× × ×

ଆକାର ପ୍ରାପ୍ତ ଦଶଇ ଆକାର ତା ନାହିଁ ।
ଆକାଶ ବୋଇଲେ ବ୍ରହ୍ମ ମହାଶୂନ୍ୟ ଦେଖି ॥
ଅକ୍ଷର ପରସ୍ତ ଦଶେ ନେହେ ମାତ୍ରାକ୍ଷର ।
ବର୍ଣ୍ଣନା ବୋଇଲେ ବର୍ଣ୍ଣ ନୋହେ ରୂପ ତାର ॥

× × ×

ଅଶ୍ରୁତ ନୁହନ୍ତି ସେ ଅଛୁ ତାଙ୍କ ଶ୍ରୁତ ।
ଭେଦାଭେଦ କଲେ ନ ଟଳଇ ଚଉ ମତ ॥
ଅନାମିକ ନୁହନ୍ତି ସେ ଅଛୁ ତାଙ୍କ ନାମ ।
କଲମ ନଚଳେ ନାହିଁ ଯାର ବ୍ରହ୍ମଜ୍ଞାନ ॥
ଏକସତ୍ୟ ଏକବ୍ରତ ଏକ ଦୃଢ଼ ବାଣୀ ।
ଏକ ନାମୀ ଏକ ସ୍ୱାମୀ ଏକାନ୍ତରେ ଚିହ୍ନି ॥
ମହିମା ନାମଟି ଯେହୁ ମିଶେ ସର୍ବଠାରେ ।
ଅନ୍ତରେ ବାହାରେ ଆବୋରିଛୁ ଏ ଦେହରେ ॥"

ବେଦ, ବେଦାନ୍ତ ଓ ଶାସ୍ତ୍ର ପୁରାଣାଦି ଅଧ୍ୟୟନଦ୍ୱାରା ତାଙ୍କୁ ପାଇବା ସମ୍ଭବ ନୁହେଁ, ସେ କରୁଣାର ସାଗର । ଯିଏ ପରିପୂର୍ଣ୍ଣ ଆତ୍ମସମର୍ପଣ ଓ ଅନନ୍ୟ ଭକ୍ତିଦ୍ୱାରା ତାଙ୍କର ଚରଣକମଳରେ ଶରଣ ପଶେ ସେ ତାକୁ ସକଳ ପାପତାପରୁ ରକ୍ଷାକରନ୍ତି । ତାଙ୍କୁ ପାଇବାର ଏକମାତ୍ର ଉପାୟ ହେଉଛି ବ୍ରହ୍ମନାମ ଭଜନ ।

"ଆତ୍ମାର ଭଜିଲେ ସିନା ଆତ୍ମା ବୋଧ ହେବ ।
ନାମକୁ ଭଜିଲେ ସିନା ମୁକତି ଲଭିବ ॥"

ବ୍ରହ୍ମ ସ୍ୱରୂପ ବ୍ୟାଖ୍ୟା କରିବା ବ୍ୟତୀତ ଏହି ଗ୍ରନ୍ଥରେ ମହାନିତ୍ୟଧାମ ଓ ମହିମା ଗାଦି ବିଷୟ ବର୍ଣ୍ଣନା କରିଅଛନ୍ତି, ଏ ବିଷୟ ଆଗରୁ କୁହାଯାଇଛି । ମହାନିତ୍ୟପୁର ସମ୍ବନ୍ଧରେ ସେ କହିଛନ୍ତି—

ଲେଖ ଉଚ ସେଠାବରେ ବାରଣ ନୁହନ୍ତି,
ବ୍ରହ୍ମ ମହାନିତ୍ୟବାସୀ ସର୍ବେ ଏକ ଜାତି ।
ଅହିଂସା ଭବନ ଚିହ୍ନି ନଥାଇ ଅରଷ୍ଟି,
ସଦାସରବଦା ହେଉଅଛୁ ସାଧୁ ଗୋଷ୍ଠୀ ।
ଅନ୍ଧାର ଉଜ୍ଜ୍ୱଳ ନୋହେ ରାତ୍ରଦିନ ଏକ,
ଚନ୍ଦ୍ର ସୂର୍ଯ୍ୟ ସେଠାବରେ ହୋଇଛନ୍ତି ଦୀପ ।

ଏହାବ୍ୟତୀତ କବି ଏହି ଗ୍ରନ୍ଥରେ ବ୍ରହ୍ମଜ୍ଞାନ ଭକ୍ତିଯୋଗର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି—

"କି ଶ୍ୱା କର୍ମ କଲମାନେ ମାୟାରେ ବନ୍ଧିତ,
ବ୍ରହ୍ମଙ୍କ ଭଜିବାର ଲୋକେ ବ୍ରହ୍ମେ ହୋନ୍ତି ଲୀନ ।
ସତ୍ୟ ଆଶ୍ରା କଲଲୋକ ଶୂନ୍ୟ ବ୍ରହ୍ମେ ପଶେ,
ପାପ କର୍ମ କଲାଲୋକ ନରକେ ନିବାସେ ।
ବିହି କର୍ମ କଲ ଲୋକ ମହିତ୍ତ୍ୱକୁ ପାଏ,
କୁକର୍ମ କରିବା ଲୋକ ଯମପୁର ଯାଏ ।"

ବ୍ରହ୍ମନିରୂପଣଗୀତା ଏକ ତତ୍ତ୍ୱମୂଳକ ଗ୍ରନ୍ଥ । ଏହାର ଭାଷା ସରଳ ଓ ପଦଯୋଜନା ହୃଦୟସ୍ପର୍ଶୀ । ଏହା କବିଙ୍କର ଆଦ୍ୟ ଜୀବନର ଲେଖା ।

"ମୂର୍ଖ କବି ଅଟଇ ମୁଁ ବାଳୁତ ବୟସ ।
ସାଧୁ ସୁଜ୍ଞଜନେ ମୋର ନ ଧରିବ ଦୋଷ ।।"

## ଅଷ୍ଟକବିହାରୀ ଗୀତା—

ଏହା ଏକ କ୍ଷୁଦ୍ର ପୁସ୍ତକ । ଏଥିରେ କ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରଗୁଡ଼ିକ ପଦ ମୂଳରେ ବ୍ୟବହାର କରି ଗ୍ରନ୍ଥଟି ରଚନା କରାଯାଇଛି । ଏଥିରେ ନଅଙ୍କ ଦୁର୍ଭିକ୍ଷର ଭୟାବହ ଚିତ୍ର ପ୍ରଦତ୍ତ ହୋଇଥିବାରୁ ଏହା ୧୮୬୬ ମସିହାରେ କମ୍ୱା କିଛିତ ପରେ ରଚିତ ହୋଇଥିବା ସମ୍ଭବପର । ଏହା ଏକ ପ୍ରଚାରମୂଳକ ଗ୍ରନ୍ଥ । କବି ଏଥିରେ ସମସାମୟିକ ସମାଜର ନୀତିହୀନତା ଓ ଭ୍ରଷ୍ଟାଚାର ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରିଛନ୍ତି ଏବଂ କଳି ଆକ୍ରମଣରୁ ରକ୍ଷା ପାଇବା ପାଇଁ ସତ୍ୟ ମହିମା ଧର୍ମର ଆଶ୍ରୟ ଗ୍ରହଣ କରିବା ପାଇଁ ଆକୁଳ ନିବେଦନ ଜଣାଇଛନ୍ତି । କବି ଏହି ପ୍ରସଙ୍ଗରେ ଶରୀରଭେଦ ବା ଘଟଯୋଗ ବିଷୟ ଅବତାରଣା କରି କହିଅଛନ୍ତି ଯେ ପରଂବ୍ରହ୍ମ ଏହି ଘଟ ଭିତରେ ପୁରି ରହିଛନ୍ତି । ତେଣୁ ତାଙ୍କୁ ବାହାରେ ନଖୋଜି ଘଟ ମଧ୍ୟରେ ଅନୁସନ୍ଧାନ କଲେ ମୁକ୍ତି ସୁନିଶ୍ଚିତ ।

"ଘଟରେ ନିରୂପଣ କର । ଆତ୍ମା ଗୋଚରେ ତାଙ୍କୁ ଧର ।।
ଘଟରେ ପଶିଅା ଅଛନ୍ତି । ଏ ଆତ୍ମା ଉଦ୍ଧାର କରନ୍ତି ।।
ଘୋର ବନଟି ଦେହ ଜାଣ । ଯେମନ୍ତେ ହେବ ପରିତ୍ରାଣ ।।
ଘଟରେ ପୁରିଛନ୍ତି ସେହି । ଜୀବନ ଲିଙ୍ଗ ପାସ୍ ହୋଇ ।।
ଘାଣ୍ଟି ହେଉଛ ବିଅର୍ଥରେ । ପ୍ରଭୁ ଅଛନ୍ତି ଏ ଘଟରେ ।।"

ଅଷ୍ଟକବିହାରୀ ଗୀତାର ଭାଷା ଅତ୍ୟନ୍ତ ସରଳ ଏବଂ ପଦଯୋଜନା ମଧୁର ଓ ଭାବ-ବ୍ୟଞ୍ଜକ । ଏହା ନବାକ୍ଷରୀ ଛନ୍ଦରେ ରଚିତ ।

**ଆଦିଅନ୍ତ ଗୀତା—**

ଏହା ଏକ ତତ୍ତ୍ୱମୂଳକ ଗ୍ରନ୍ଥ । ଏହା ଜୀବ ପରମ ଉକ୍ତି ପ୍ରତ୍ୟୁକ୍ତି ଛଳରେ ରଚିତ ହୋଇ ଅଛି । ଏଥିରେ ଜୀବକୁ ଯୁବତୀ ରୂପରେ କଳ୍ପନା କରାଯାଇଛି; କାରଣ ଜୀବ ବିଷୟ ଭୋଗ କରେ—କିନ୍ତୁ ପରମାତ୍ମା ସାକ୍ଷୀ ରୂପରେ ଅବସ୍ଥାନ କରନ୍ତି । କବି ଏହି ଗ୍ରନ୍ଥରେ ଶରୀର-ଭେଦ ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ଚିହ୍ନଟି ବିଶ୍ଳେଷଣ କରିଅଛନ୍ତି । ସେ ଶରୀର ମଧ୍ୟରେ ଦଶ ଅବତାର, ନବଗ୍ରହ, ଅଷ୍ଟାଦଶ ସିଦ୍ଧି, ନବଖଣ୍ଡ ମେଦିନୀ, ନବଲକ୍ଷ ତାରା, ମେରୁଗିରି ଓ ଗଙ୍ଗାଯମୁନା ଆଦି ନିର୍ଦ୍ଦେଶ କରିଅଛନ୍ତି । ସେ ଉଲ୍ଲେଖ କରିଛନ୍ତି ଯେ ତାଳୁକା ଶିଖ ଉପରେ ବ୍ରହ୍ମରନ୍ଧ୍ର ଓ ସହସ୍ରାର ଚକ୍ର ବିଦ୍ୟମାନ । ଏହାହିଁ ମହାନିତ୍ୟସ୍ଥଳ ଏବଂ ଅଲେଖ ପରଂବ୍ରହ୍ମଙ୍କର ବିହାରସ୍ଥଳ । ଏଠାରେ ଜୀବ ପରମ ବା ରାଧା-କୃଷ୍ଣଙ୍କ ନିତ୍ୟ ରାସଲୀଳା ଲାଗିରହିଛି । ଉପଯୁକ୍ତ ସାଧନା ବଳରେ ଜୀବ ସେଠାରେ ଅଲେଖ ପରଂବ୍ରହ୍ମଙ୍କୁ ଦର୍ଶନ କରି ତାଙ୍କଠାରେ ଲୀନ ହୁଏ । ଭୀମଭୋଇଙ୍କ ମତରେ ଘଟଯୋଗ ହେଉଛି ନିର୍ବେଦ ଜ୍ଞାନ । ଏହା ଅଭ୍ୟାସ କରିପାରିଲେ ମନୁଷ୍ୟ ସହଜରେ ମୋକ୍ଷଭାଗୀ ହୋଇଥାଏ ।

> ଭେଦ ମାର୍ଗେ ସଖୀ ନାମରେ ନ ଜାଣନ୍ତି ।
> ବେଦଶାସ୍ତ୍ର ପଢ଼ି ସର୍ବେ ଗୋ ଯାଉଛନ୍ତି ॥
> ଭେଦାନ୍ତ ବାଛି ଗୋ ନ ପାରିଲେ ।
> ବିଷୟା ଧନ୍ଦାରେ ପଡ଼ି ଗୋ ଭୋଳହେଲେ ॥
> ଭେଦ ମାର୍ଗ ଯେଣୁ ଅଟେ ଗୋ ମହାଗାଢ଼ ।
> ଭେଦପାରୁ ଗୁରୁଦ୍ୱାରେ ଗୋ ବଡ଼ ହେଲ ॥

**ନିର୍ବେଦ ସାଧନ—**

ଏହା ମଧ୍ୟ ଭୀମଭୋଇଙ୍କର ପ୍ରାରମ୍ଭିକ ଲେଖାମାନଙ୍କ ମଧ୍ୟରୁ ଅନ୍ୟତମ । ଭୀମଭୋଇ ୧୮୬୨ ମସିହାରେ ମହିମା ସ୍ୱାମୀଙ୍କଦ୍ୱାରା ମହିମା ଧର୍ମରେ ଦୀକ୍ଷିତ ହୋଇଥିବା ଜଣାଯାଏ । ତେଣୁ ଏହି ଗ୍ରନ୍ଥ ୧୮୬୩-୬୪ ମଧ୍ୟରେ ରଚିତ ହୋଇଥିବା ସମ୍ଭବ । ଏହା ମହିମାସ୍ୱାମୀ ଓ ତାହାଙ୍କ ପ୍ରଥମ ଶିଷ୍ୟ ଗୋବିନ୍ଦ ଦାସଙ୍କ ମଧ୍ୟରେ କଥୋପକଥନ ଛଳରେ ରଚିତ । ଏହା ନବାକ୍ଷରୀ ଭାଗବତ ବୃତ୍ତରେ ରଚିତ ହୋଇଅଛି । ମହିମାଧର୍ମର ଇତିହାସ ଦୃଷ୍ଟିରୁ ଏ ପୁସ୍ତକଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଥିରେ ପୁରୁଷୋତ୍ତମ କ୍ଷେତ୍ରରେ ମହିମାସ୍ୱାମୀଙ୍କର ଆବିର୍ଭାବ, କପିଳାସରେ ଯୋଗସାଧନା, ଧର୍ମପ୍ରଚାର, ଗୋବିନ୍ଦ ଦାସଙ୍କ ଶିଷ୍ୟତ୍ୱ ଗ୍ରହଣ, ଭୀମଭୋଇଙ୍କ ଦୀକ୍ଷା ଗ୍ରହଣ, ପଶ୍ଚିମାଞ୍ଚଳ ଓ ପୂର୍ବାଞ୍ଚଳରେ ଧର୍ମ ପ୍ରଚାର ଏବଂ ମହିମାସ୍ୱାମୀଙ୍କ ବିବିଧ ଲୀଳାଖେଳା ବର୍ଣ୍ଣିତ ହୋଇଅଛି । ଅନ୍ୟାନ୍ୟ ପ୍ରସଙ୍ଗ ମଧ୍ୟରେ ଏଥିରେ ଅଲେଖ ପରଂବ୍ରହ୍ମତତ୍ତ୍ୱ, ସୃଷ୍ଟିତତ୍ତ୍ୱ, ପୃଥ୍ୱୀର ନିର୍ମାଣ କାହାଣୀ, ବ୍ରହ୍ମଜ୍ଞାନ ଭକ୍ତିଯୋଗ, ଅଷ୍ଟାଙ୍ଗ ଯୋଗ, ଘଟଯୋଗ, ମହିମାଧର୍ମର ନିଷ୍କାମ ଭକ୍ତିଯୋଗ ଓ ନାମ ଭଜନର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ପ୍ରବୃତ୍ତି ମାର୍ଗ ଅପେକ୍ଷା ଏଥିରେ ନିବୃତ୍ତି ମାର୍ଗ ଉପରେ ଗୁରୁତ୍ୱ

ଆରୋପ କରାଯାଇଛି । ଶ୍ରୀମଦ୍‌ଭଗବଦ୍‌ଗୀତାର ବିଭୂତିଯୋଗ ପ୍ରସ୍ଥାରେ ଏଥିରେ ଅଲେଖ ପରମବ୍ରହ୍ମଙ୍କର ବିଭୂତି ସମୂହର ଏକ ମନୋଜ୍ଞ ବର୍ଣ୍ଣନା ପ୍ରଦତ୍ତ ହୋଇଛି ।

ଆଦିତ୍ୟ ମଣ୍ଡଳେ ମୋ ବାସ । ମୁଁ ସର୍ବ ତେଜ ପରକାଶ ॥
ସକଳ ଭୂତେ ପୂରିଥାଇ । ମୋ ନାମ ଅଣସ୍ୱରେ ବାଇ ॥
ମୋ ନାମ ଥାଇ ଅଗ୍ନି ମଧ୍ୟ । ମୋ ନାମ ବିଷ୍ଣୁଙ୍କର ପଦ ॥
ମୋ ନାମ ସପତ ସାଗର । ପୂରି ରହିଛି ଚରାଚର ॥
କ୍ଷୀର ସିନ୍ଧୁରେ ମୋର ବାସ । ମୋ ନାମ ଅନାଦି ପୁରୁଷ ॥
ଆମ୍ଭେ ହୋ ଆଦିଶକ୍ତି ଦାସ । ପୃଥିବୀ ଧରିଛୁ ଆବୋରି ॥
ଅନନ୍ତ ନାଗଟି ବୋଲାଇ । ସପ୍ତ ଫଣାରେ ପୃଥ୍ୱୀ ବହି ॥

ଶେଷରେ ପ୍ରବୃତ୍ତିମୂଳକ କର୍ମକାଣ୍ଡ ପରିହାରକରି ମହିମାଧର୍ମରେ ଦୀକ୍ଷିତ ହୋଇ ନାମ ଭଜନ କରିବାକୁ ସେ ଜନସାଧାରଣଙ୍କୁ ନିବେଦନ କରିଅଛନ୍ତି ।

ନାମଟି ଅମୂଲ୍ୟ ରତନ । ସରି ନୁହଇ ତ୍ରିଭୁବନ ॥
ଅନୁଭବର ଜ୍ଞାନ ଭେଦ । ସରି ନୁହଇ ଚାରି ବେଦ ॥
ମନେ ବିଚାରିଥିଲେ ବୁଝି । ସାହାସ୍ତେ ପାଇବୁକ ଖୋଜି ॥
ହେଲେ ତୁ ଅବଧୂତ ସୁତ । ପାଇବୁ ବ୍ରହ୍ମଜ୍ଞାନ ତତ୍ତ୍ୱ ॥

ନିର୍ବେଦ ସାଧନର ଭାଷା ଅତ୍ୟନ୍ତ ସରଳ ଓ ହୃଦୟଗ୍ରାହୀ । କଠିନ ଆଧ୍ୟାତ୍ମିକତତ୍ତ୍ୱର ବିଶ୍ଳେଷଣରେ ଭୀମଭୋଇ ଅପୂର୍ବ ସଫଳତା ପ୍ରଦର୍ଶନ କରିଛନ୍ତି ।

**ଶ୍ରୁତି ନିଷେଧ ଗୀତା—**

ଏହି ଗ୍ରନ୍ଥଟି ମହିମାଧର୍ମ ସମ୍ବନ୍ଧୀୟ ଅନ୍ୟ ଏକ ଅମୂଲ୍ୟ ଗ୍ରନ୍ଥ । ଏଥିରେ ମହିମାଧର୍ମର ସାରତତ୍ତ୍ୱ, ସାଧନ ମାର୍ଗ ଓ ବିଶିଷ୍ଟାଚାର ପଦ୍ଧତି ଅତି ଚମତ୍କାର ଭାବରେ ବିଶ୍ଳେଷଣ କରାଯାଇଛି । ଏହାର ନାମକରଣରୁ ବିଷୟବସ୍ତୁର ସୂଚନା ମିଳିଥାଏ । ଏହା ନବାକ୍ଷରୀ ଛନ୍ଦରେ ରଚିତ ଓ ସାତଟି ଅଧ୍ୟାୟରେ ବିଭକ୍ତ । ଏହି ଗ୍ରନ୍ଥ କବିଙ୍କର ପ୍ରାରମ୍ଭ ଯୌବନ କାଳର ରଚନା ବୋଲି ଗ୍ରନ୍ଥର ଭଣିତାରେ ସେ ପ୍ରକାଶ କରିଅଛନ୍ତି । ମହିମା ସ୍ୱାମୀ ଓ ଗୋବିନ୍ଦ ଦାସଙ୍କ କଥୋପକଥନ ଛଳରେ ଗ୍ରନ୍ଥଟି ରଚିତ ହୋଇଛି । ପରଂବ୍ରହ୍ମ ଅଲେଖ, ଅରୂପ, ଅଣାକ୍ଷର ଏବଂ ପୂର୍ଣ୍ଣାନନ୍ଦ । ସେ ନିଖିଳ ବିଶ୍ୱରେ ସର୍ବତ୍ର ସମାନ ଭାବରେ ପୂରି ରହିଛନ୍ତି । ବ୍ରହ୍ମାଣ୍ଡ ଭଳି ଏ ପିଣ୍ଡ ଭିତରେ ମଧ୍ୟ ସେ ପୂରି ରହିଛନ୍ତି । ତେଣୁ ରୂପ ଓ ମୂର୍ତ୍ତିର ଆଶ୍ରୟ ଗ୍ରହଣ ନ କରି ଏକ ଅଦ୍ୱୟ ପରଂବ୍ରହ୍ମଙ୍କର ଉପାସନା କରିବା ପାଇଁ ଏଥିରେ ନିଖିଳ ଜନତାକୁ ନିବେଦନ କରାଯାଇଛି । ବୈଷ୍ଣବଧର୍ମ, ଶୈବଧର୍ମ ଶାକ୍ତଧର୍ମ ଓ ବୈଦିକ କର୍ମକାଣ୍ଡ ସକାମ ଓ ସଗୁଣ । ଏଥିରେ ବ୍ରହ୍ମପ୍ରାପ୍ତି ସମ୍ଭବପର ନୁହେଁ । ପ୍ରତିମା ପୂଜା, ଦଶମୀ ଏକାଦଶୀ ଆଦି ବ୍ରତ ପାଳନ, ତୀର୍ଥଗମନ, ମାଳାତିଳକ ଧାରଣ, ନିର୍ମାଲ୍ୟ ସେବନ ଓ ତୁଳସୀ ମାଳା ଧାରଣ ନିରର୍ଥକ । ଏଥିରେ ମୁକ୍ତି ନାହିଁ । କେବଳ ମାତ୍ର ନାମ

ଭଜନ ଓ ବ୍ରହ୍ମଜ୍ଞାନ ଭକ୍ତିଯୋଗ ହିଁ ସାର ଅଟେ । ତେଣୁ ସକଳ ପ୍ରକାର ସକାମ ଓ ସଗୁଣ ମାର୍ଗ ତ୍ୟାଗକରି ଅଲେଖ ପରଂବ୍ରହ୍ମଙ୍କ ପାଦପଦ୍ମରେ ସର୍ବସ୍ୱ ସମର୍ପଣ ପୂର୍ବକ ତାହାଙ୍କ ନାମ ଭଜନକୁ ଜୀବନର ଧ୍ୟେୟରୂପେ ଗ୍ରହଣ କରିବା ପାଇଁ କବି ସମସ୍ତଙ୍କୁ ଏଥିରେ ନିବେଦନ କରିଅଛନ୍ତି । ଶୁଷ୍କ କାଠରେ ତିଆରି ମୂର୍ତ୍ତି ଜଗନ୍ନାଥ ନୁହନ୍ତି । ଜଗନ୍ନାଥ ପ୍ରତି ମନୁଷ୍ୟର ଘଟରେ ହିଁ ବିଦ୍ୟମାନ । ସାଧନାଦ୍ୱାରା ତାହାଙ୍କର ଦର୍ଶନ ପାଇପାରିଲେ ମୁକ୍ତି ସୁନିଶ୍ଚିତ ।

ହୃଦ କମଳେ ଜଗନ୍ନାଥ । ସ୍ୱରୂପ ବୁଝି ହେ ଭକତ ॥
ଲକ୍ଷ୍ମୀଙ୍କୁ ସଙ୍ଗତରେ ଘେନି । ବିଜୟ ହୃଦୟ ମୂର୍ଦ୍ଧନି ॥
ଘଟରେ ଜଗନ୍ନାଥ ଅଛି । ମିଛରେ ପ୍ରତିମା ପୂଜୁଛି ॥
ମୂର୍ତ୍ତି ପ୍ରତିମା ଶୁଷ୍କ କାଠ । ସେ ପୁଣି ଦେବ କି ବୈକୁଣ୍ଠ ॥
ମିଥ୍ୟାରେ ଭୁଲି ମରେ ପ୍ରାଣୀ । ଘଟ ପ୍ରତିମାକୁ ନ ଚହ୍ନି ॥

**ଭଜନ—**

ଭଜନ ଓଡ଼ିଆ ଅଧ୍ୟାତ୍ମ ସାହିତ୍ୟର ଏକ ବିଶିଷ୍ଟ ଅଙ୍ଗ । ଓଡ଼ିଆ ଭଜନ ସାହିତ୍ୟକୁ ଭୀମ ଭୋଇଙ୍କର ଦାନ ଅତୁଳନୀୟ । ତାଙ୍କର ଭଜନଗୁଡ଼ିକ ଓଡ଼ିଆ ଅଧ୍ୟାତ୍ମ ସାହିତ୍ୟର ମଣିମାଣିକ୍ୟ । ସେଗୁଡ଼ିକର ଆବେଦନ ନିତ୍ୟ ଓ ଶାଶ୍ୱତ । ବିନ୍ଦୁର ସିନ୍ଧୁ ସହିତ, ସୀମାର ଅସୀମ ସହିତ ଏବଂ କ୍ଷୁଦ୍ରାତିକ୍ଷୁଦ୍ର ଭୂମା ସହିତ ମିଳିତ ହେବାର ଯେଉଁ ଅନନ୍ତ ଆକାଂକ୍ଷା ମନୁଷ୍ୟ ପ୍ରାଣରେ ଚିରଜାଗ୍ରତ, ଭୀମଭୋଇ ତାହାକୁ ତାଙ୍କ ଭଜନମାନଙ୍କରେ ରୂପାୟିତ କରିଛନ୍ତି । ସେଥିପାଇଁ ତାଙ୍କର ଭଜନଗୁଡ଼ିକ ନିତାନ୍ତ ପାଷଣ୍ଡ ବ୍ୟକ୍ତିର ଅନ୍ତରକୁ ମଧ୍ୟ ସ୍ପର୍ଶ କରେ । ଭୀମଭୋଇ ଯଥାର୍ଥରେ ଓଡ଼ିଆ ସାହିତ୍ୟର ଭଜନ ସମ୍ରାଟ । ସ୍ତୁତିଚିନ୍ତାମଣି କାବ୍ୟରେ ଭୀମଭୋଇ ଠାଏ କହିଛନ୍ତି—

"ଶୁଣି ବିଶ୍ୱର ଦୟାକର ବାଞ୍ଛା ଫଳ ପୂର୍ଣ୍ଣ ହେଉ ।
କବିକୃତ କଳା ଫୁଟି ଅନର୍ଗଳା ଯୁଗେ ଯୁଗେ କୀର୍ତ୍ତି ରହୁ ॥"

ଏହା ଭୀମଭୋଇଙ୍କର ଦମ୍ଭୋକ୍ତି ନୁହେଁ । ଜାତି, ଧର୍ମ, ବର୍ଣ୍ଣ, ସ୍ଥାନ ଓ କାଳ ନିର୍ବିଶେଷରେ ତାଙ୍କର ଭଜନ ଓ ଜଣାଣଗୁଡ଼ିକ ଯୁଗେ ଯୁଗେ ମନୁଷ୍ୟ ପ୍ରାଣକୁ ଆଲୋଡ଼ିତ ଓ ଅନୁପ୍ରାଣିତ କରୁଥିବ ।

ଭୀମଭୋଇ ବହୁ ଭଜନ ରଚନା କରିଛନ୍ତି । ତନ୍ମଧ୍ୟରୁ ୩୧୦ଗୋଟି ଭଜନ ପ୍ରକାଶିତ ହୋଇଅଛି । ଆହୁରି ଅନେକ ଭଜନ ଏବେ ମଧ୍ୟ ଲୋକଲୋଚନର ଅଗୋଚରରେ ରହିଅଛି । ଏହି ଭଜନଗୁଡ଼ିକ ବିଭିନ୍ନ ସମୟରେ ରଚିତ । କେତେଗୁଡ଼ିଏ ଭଜନ ମହିମା-ସ୍ୱାମୀଙ୍କ ତିରୋଧାନ ପରେ ରଚିତ ହୋଇଅଛି । ଗୋଟିଏ ଗୋଟିଏ ଭଜନରେ ସାଧାରଣତଃ ୬-୭ ଟି ପଦ ଥିବାର ଦେଖାଯାଏ । ଭଜନଗୁଡ଼ିକ ବିଭିନ୍ନ ରାଗରାଗିଣୀରେ ରଚିତ । ଭୀମଭୋଇ ଜଣେ ଆଶୁ କବି ଥିଲେ । ସେ ଏକ ବୈଠକରେ ଏକ ଘଣ୍ଟେ ସ୍ୱରେଟି

ଭଜନ ରଚନା କରିପାରୁଥିଲେ । ସାଧାରଣତଃ ରଚନା କରିସାରିବା ପରେ ଭୀମ ଭୋଇ ସେଗୁଡ଼ିକ ମହିମାସ୍ୱାମୀଙ୍କ ନିକଟକୁ ପଠାଇଦେଉଥିଲେ ଏବଂ ତାଙ୍କ ସମ୍ମୁଖରେ ସେଗୁଡ଼ିକ ଗାନକରାଯାଉଥିଲା । ଭୀମଭୋଇଙ୍କର ଭଜନଗୁଡ଼ିକୁ ସ୍ଥୂଳତଃ ଦୁଇଗୋଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ । ଯଥା —(୧) ତତ୍ତ୍ୱସମ୍ବଳିତ ଓ (୨) ଆବେଦନମୂଳକ । ତତ୍ତ୍ୱସମ୍ବଳିତ ଭଜନମାନଙ୍କରେ ପରଂବ୍ରହ୍ମ ତତ୍ତ୍ୱ, ସୃଷ୍ଟି ତତ୍ତ୍ୱ, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ଶରୀରଭେଦ,ଜ୍ଞାନ ଓ ଭକ୍ତି ତତ୍ତ୍ୱ, ମହିମାସ୍ୱାମୀଙ୍କ ଆବିର୍ଭାବ ଓ ଧର୍ମପ୍ରଚାର ଏବଂ ମହିମାଧର୍ମର ନୀତିନିୟମ ଓ ଆଚାର ଅନୁଷ୍ଠାନ ବର୍ଣ୍ଣିତ ହୋଇଅଛି । ଆବେଦନମୂଳକ ଭଜନଗୁଡ଼ିକୁ ପୁନର୍ବାର ତିନିଗୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । କେତେଗୁଡ଼ିଏ ଭଜନରେ ସେ ନିଜର ଦୁଃଖଦୈନ୍ୟ ଓ ହୃଦୟର ବେଦନା ଜଣାଇ ସେଗୁଡ଼ିକର ଓ ଭବବନ୍ଧନରୁ ମୁକ୍ତିଲାଭ ପାଇଁ ପ୍ରଭୁଙ୍କଠାରେ କାତର ନିବେଦନ ଜଣାଇଛନ୍ତି । ଆଉ କେତେକ ଭଜନରେ କଳିକଳୁଷଜର୍ଜରିତ ଦୁଃଖାର୍ତ୍ତ ଜନତାର ଦୁଃଖ ହରଣ ଓ ମୁକ୍ତିର ପଥ ପ୍ରଦର୍ଶନ ନିମିତ୍ତ ଅଲେଖମହିମାଙ୍କର ପାଦପଦ୍ମରେ ବିନତି ଜଣାଇଛନ୍ତି । ତୃତୀୟରେ ସେ କେତେଗୁଡ଼ିଏ ଭଜନରେ ପାପତାପ କ୍ଲିଷ୍ଟ ଅଜ୍ଞାନତମସାଚ୍ଛନ୍ନ ପୃଥିବୀବାସୀଙ୍କୁ ମହିମା-ଧର୍ମରେ ଦୀକ୍ଷିତ ହୋଇ ନିଜର ମୁକ୍ତିର ପଥ ସୁଗମ କରିବା ପାଇଁ ଅହ୍ୱାନ ଦେଇଛନ୍ତି ।

ଭୀମଭୋଇଙ୍କ ଭଜନଗୁଡ଼ିକ ସ୍ୱତଃସ୍ଫୂର୍ତ୍ତି, ସରଳ ଭାବବ୍ୟଞ୍ଜକ, ଆବେଗମୁଖର, ସଙ୍ଗୀତମୟ ଓ ମର୍ମସ୍ପର୍ଶୀ । ପାଠ କରିବାମାତ୍ରେ ସେଗୁଡ଼ିକ ପାଠକର ମାନସପଟରେ ଚିରଦିନ ପାଇଁ ଅଙ୍କିତ ହୋଇଯାଏ । ଭୀମ ଭୋଇଙ୍କର ଅଧିକାଂଶ ଭଜନର ଆବେଦନ ସାର୍ବଜନୀନ । ଏଗୁଡ଼ିକ ପାଠ କରିବା ବା ବଖାଣିବା ବେଳେ ପାଠକ ବା ଶ୍ରୋତାର ମନ କେଉଁ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ଚାଲିଯାଇ ଦିବ୍ୟାନନ୍ଦରେ ପରିପ୍ଳୁତ ହୁଏ ।

**ଚଉତିଶା —**

ଚଉତିଶା ଓଡ଼ିଆ ସାହିତ୍ୟର ଏକ ପ୍ରାଚୀନ ପରଂପରା । ଆଦିକବି ସାରଳା ଦାସ ତାହାଙ୍କ ମହାଭାରତରେ କଳସା ଚଉତିଶାର ନାମୋଲ୍ଲେଖ କରିଅଛନ୍ତି । ଚଉତିଶାରେ କ ଠାରୁ କ୍ଷ ପର୍ଯ୍ୟନ୍ତ ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷରକୁ କ୍ରମାନ୍ୱୟରେ ପଦ ମୂଳରେ ରଖି ପଦ୍ୟ ରଚନା କରାଯାଏ । ଙ, ଞ ଏବଂ ଣ ବର୍ଣ୍ଣସ୍ଥାନରେ 'ଅ' ବ୍ୟବହାର କରାଯାଏ । ଚଉତିଶା ରଚନାରେ ଭୀମ ଭୋଇ ଅପୂର୍ବ ସିଦ୍ଧହସ୍ତତା ପ୍ରଦର୍ଶନ କରିଅଛନ୍ତି । ପ୍ରଚଳିତ ପରମ୍ପରାର ବ୍ୟତିକ୍ରମ ଘଟାଇ ସେ କେତେକ ଚଉତିଶାରେ ବିପରୀତ ରୀତିରେ କ୍ଷ ଠାରୁ କ ପର୍ଯ୍ୟନ୍ତ ବର୍ଣ୍ଣଗୁଡ଼ିକ କ୍ରମାନ୍ୱୟରେ ବ୍ୟବହାର କରିଅଛନ୍ତି । ଚଉତିଶାଗୁଡ଼ିକ ଅତ୍ୟନ୍ତ ଚମତ୍କାରିକ ଓ ହୃଦୟଗ୍ରାହୀ । ଏଗୁଡ଼ିକରେ ମହିମାଧର୍ମର ସାରତତ୍ତ୍ୱ ବ୍ୟାଖ୍ୟାନ କରାଯାଇଛି । କେତେଗୁଡ଼ିଏ ଚଉତିଶାରୁ ଭୀମଭୋଇଙ୍କ ଗଭୀର ଅନ୍ତର୍ଦ୍ୱନ୍ଦ୍ୱର ପରିଚୟ ମିଳେ ।

---

# ବିପ୍ଳବୀ ଭୀମଭୋଇ

ଭୀମଭୋଇ ମହିମା ଧର୍ମର ଜଣେ ପ୍ରଧାନ ଭକ୍ତ ଥିଲେ । ପ୍ରଭୁଙ୍କଗୁରୁ ମହିମା ସ୍ୱାମୀଙ୍କର ଚରଣାରବିନ୍ଦରେ ନିଜର ସର୍ବସ୍ୱ ଅର୍ପଣ କରିଦେଇ ସେ ତାଙ୍କର ସେବା ଓ ଆରାଧନାରେ ଆପଣାକୁ ଉତ୍ସର୍ଗ କରିଦେଇଥିଲେ । ଅସଂଖ୍ୟ ସ୍ତୁତି, ଜଣାଣ, ଭଜନ, ଚଉତିଶା-ମାଧ୍ୟମରେ ସେ ଶୂନ୍ୟସ୍ୱରୂପ ଅଲେଖ ପରଂବ୍ରହ୍ମଙ୍କର ମହିମା ଗାନ କରିଅଛନ୍ତି । ତାଙ୍କର ପ୍ରତ୍ୟେକ ରଚନା ଗୁରୁପଦ ବନ୍ଦନାରେ ଆରମ୍ଭ ଓ ଶେଷହୋଇଅଛି । ସେ ନିଜକୁ ଦାସ, ଅକିଞ୍ଚନ, ମୂଢ଼, ଅଧମ, ପାମର ଓ ଅଜ୍ଞାନ ବୋଲି କହି ବାରମ୍ବାର ନିଜର ଦୀନତା, ବିନୟ ଓ ନମ୍ରତା ପ୍ରକାଶ କରିଅଛନ୍ତି । ହେଲେ ଏହିସବୁ ଆବେଦନ, ନିବେଦନ ଓ ସ୍ତୁତି ଜଣାଣ ଅନ୍ତରାଳରୁ ଉଙ୍କିମାରୁଥିବା ଏକ ଉଦ୍ଧତ, ଅନମନୀୟ ଓ ବଳିଷ୍ଠ ବ୍ୟକ୍ତିତ୍ୱର ଝଲକ ଯାହା କାହାରି ନିକଟରେ ପରାଜୟ ସ୍ୱୀକାର କରିବାକୁ ଚାହେଁ ନାହିଁ । ବେଳେ ବେଳେ ସେ ନିଜର ହୃଦୟବଲ୍ଲଭ, ପ୍ରାଣପତି ପ୍ରଭୁଙ୍କଗୁରୁ ମହିମାସ୍ୱାମୀଙ୍କର ବିଗ୍ରହର ଯୌକ୍ତିକତା ସମ୍ବନ୍ଧରେ ପ୍ରଶ୍ନ କରିବାକୁ ମଧ୍ୟ କୁଣ୍ଠାବୋଧକରିନାହାନ୍ତି ।

"ଭୁଲିଅଛି କେତେ କହି ନାନା ମତେ ବୁଝାମଣା ନାହିଁ ବେଗ ।
ଗ୍ରନ୍ଥିଦେଅ ମୋତେ ଗୁରୁଦେବ ସ୍ୱାମୀ ଭରଣା କରିବ ଯୁଗ ॥

ତାଙ୍କର ଅଟଳ ପ୍ରତିଜ୍ଞା ନିକଟରେ ମସ୍ତକ ଅବନତ ହୋଇଯାଏ ।

କହୁଛି ସଂସାରେ ସର୍ବୈଶ ଅଙ୍ଗରେ ସାଧନ ନୋହିଲେ ପୃଥ୍ୱୀ ।
ନିଷ୍ଠୁର ବଚନ ସାଧୁସଜ୍ଜନ ଶୁଣ ଶୁଣ ମୋର ସ୍ତୁତି ।
ବସିଥାଇ କୂଳ ମହାନଦୀ ଜଳ ଛୁଇଁଅଛି ସତ୍ୟକରି ।
ଧର୍ମକୁ ଲଙ୍ଘି ସୁରାପାନ କରିବି ହରିବି ବ୍ରାହ୍ମଣ ସ୍ତ୍ରୀ ॥ (ସ୍ତୁ. ଚି. ୧୭ ବୋଲି)

ଭୀମଭୋଇଙ୍କର ଏ ବାଣୀ ବିପ୍ଳବର ବାଣୀ । ଯଥାର୍ଥରେ ଭୀମଭୋଇ ଥିଲେ ଜଣେ ବିପ୍ଳବୀ । ତାଙ୍କର କବିତାଚୟ ପାଠକଲାବେଳେ ବିପ୍ଳବର ମୃଦୁପଦଧ୍ୱନି ପାଠକ ପ୍ରାଣରେ ଅପୂର୍ବ ହିଲ୍ଲୋଳ ସୃଷ୍ଟିକରିଥାଏ । ବିପ୍ଳବ ନାଁ ଶୁଣି ଚମକି ଉଠିବା ଠିକ୍ ନୁହେଁ । ଭଗବାନ ଶ୍ରୀକୃଷ୍ଣ, ଶାକ୍ୟମୁନି ଭଗବାନ ତଥାଗତ ଓ ମହାତ୍ମା ଯିଶୁଖ୍ରୀଷ୍ଟ ଥିଲେ ମହାନ୍ ବିପ୍ଳବୀ । ସେମାନଙ୍କୁ ସମସ୍ତଙ୍କୁ ସତ୍ୟର ପ୍ରତିଷ୍ଠା ପାଇଁ ସମସାମୟିକ ସମାଜ ବିରୁଦ୍ଧରେ ସଂଗ୍ରାମ କରିବାକୁ ହୋଇଥିଲା । ଏହି ଅର୍ଥରେ ଭୀମଭୋଇ ଥିଲେ ଜଣେ ପରମ ବିପ୍ଳବୀ । ସତ୍ୟର ସନ୍ଧାନ ଓ ସତ୍ୟାନୁସରଣ ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ପାନ, ଭୋଜନ, ଶୟନଠାରୁ ଆରମ୍ଭ କରି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସତ୍ୟର ଅନୁସରଣ କରୁଥିଲେ । ଅହିଂସା ଥିଲା ତାଙ୍କ ଜୀବନର ଅନ୍ୟତମ ବ୍ରତ । ତାହାଙ୍କ ଦ୍ୱାରା କଳ୍ପିତ ଓ ପ୍ରଚାରିତ ସତ୍ୟ ମହିମା ସମାଜର ଭିତ୍ତିଭୂମି ଥିଲା ସତ୍ୟ ଓ ଅହିଂସା । ଏଥିପାଇଁ ସେ ଚରମ ନିର୍ଯାତନା ଭୋଗକରି

ଥିଲେ ମଧ୍ୟ ତାହିଁରୁ ନିବୃତ୍ତ ହୋଇନଥିଲେ । ମହାତ୍ମା ଗାନ୍ଧି ସତ୍ୟ ଓ ଅହିଂସାର ବାଣୀ ପ୍ରଚାର କରିବା ପୂର୍ବରୁ ଭକ୍ତକବି ଭୀମଭୋଇ ସତ୍ୟ ଓ ଅହିଂସାକୁ ତାହାଙ୍କ ଦ୍ୱାରା ପ୍ରଚାରିତ ଓ ଅନୁସୃତ ମହିମା ସମାଜର ଭିତ୍ତିଭୂମି ରୂପେ ଗ୍ରହଣ କରିଥିବା ଅତ୍ୟନ୍ତ ଆନନ୍ଦର ବିଷୟ । ପୃଥିବୀରେ ସାମ୍ୟବାଦ ପ୍ରତିଷ୍ଠାର ବହୁ ପୂର୍ବରୁ ଭୀମଭୋଇ ସମତା, ଶାନ୍ତି ଓ ସାମାଜିକ ନ୍ୟାୟର ବାଣୀ ପ୍ରଚାର କରିଥିଲେ ।

ଜିପୁର ଜଗତେ ଜୀବ ଛନ୍ତି ଯେତେ ଅଛୁ ନାମ କଳାଚନ୍ଦ୍ର ।
ସମସ୍ତ ସଙ୍କୁଳ ଏକ ଆତ୍ମା ବୋଲି ନକରିହୋ ଆନ ଭିନ୍ନ ॥
କାଠର ଭିତରେ ସୂତ୍ରକ ଧାରୁରେ ଜଳ ପୂରିଥାଇ ଯେତେ ।
ପ୍ରାଣୀଙ୍କ ଅଙ୍ଗରେ ଜୀବ ପର୍ମରୂପ ଫୁଟି ଦିଶୁଥାଇ ସତେ ॥
ଦୋଷ କୃତ ହାନି ଲଭ ଧର୍ମାଧର୍ମ ଗାଳିମନ୍ଦ ହିନ୍ତି ଯହିଁ ।
ରୁମ ଚର୍ମ ଭେଦ କାଟେ ଜୀବନକୁ କାତର ମୁଁ ହେଉଥାଇ ॥

ବିଶ୍ୱଭ୍ରାତୃତ୍ୱ, ବିଶ୍ୱମାନବିକତା ଓ ଏକ ଅଖଣ୍ଡ ବିଶ୍ୱ ଚେତନାରେ ଉଦବୃଦ୍ଧ ହୋଇ କବି ଗାଇଛନ୍ତି—

ଏକ ଖଣ୍ଡ ହାଡ଼ ବୃନ୍ଦାଏ ରୁଧିର ଫୁଟେ ମାଉଁସ ଜାଣିଇ ।
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହିନପାରଇ ମୁହିଁ ॥

ଏହାଦ୍ୱାରା କବି ସମସାମୟିକ ସମାଜର ନୈତିକ ମୂଲ୍ୟବୋଧରେ ଏକ ଯୁଗାନ୍ତକାରୀ ବିପ୍ଳବ ଆଣିବାକୁ ଚାହିଁଛନ୍ତି । ସମାଜରେ ପ୍ରଚଳିତ ଜାତିଭେଦ ଓ ବର୍ଣ୍ଣବୈଷମ୍ୟ ନୀତିକୁ ପ୍ରତ୍ୟାଖ୍ୟାନ କରିଦେଇ ସେ ସମତା ଓ ଏକତାର ବାଣୀ ଶୁଣାଇଛନ୍ତି । ସେ କହିଛନ୍ତି ବିଶ୍ୱ ସୃଷ୍ଟିରେ କେବଳ ଦୁଇଗୋଟି ଜାତି, ଯଥା—ସ୍ତ୍ରୀ ଏବଂ ପୁରୁଷ । ଏହି ଦୁଇଜାତି ଛଡ଼ା କୌଣସି ତୃତୀୟ ଜାତି ନାହିଁ ।

"ସ୍ତ୍ରୀ ପୁରୁଷ ଦୁହିଁଙ୍କୁ ଗଢିଅଛୁ ଯୋଡ଼ିଏ ସ୍ୱରୂପ ଦେଖି ।
ଦୁତୀୟ ଜାତିରୁ ତିନିଜାତି ନାହିଁ ସୁଜନେ କରି ବିବେକ ॥

ଏହାଦ୍ୱାରା କବି ସମସାମୟିକ ଜନମାନସର ଗତାନୁଗତିକ ଚିନ୍ତାଧାରାରେ ଏକ ବିପ୍ଳବ ସୃଷ୍ଟି କରିଛନ୍ତି । ଭୀମଭୋଇଙ୍କ ମତରେ ସ୍ୱାଧୀନତା ମନୁଷ୍ୟର ଜନ୍ମଗତ ଅଧିକାର । ଏ ଜଗତରେ ଏକମାତ୍ର ପ୍ରଭୁ ହେଉଛନ୍ତି ପରାତ୍ପର ପରଂବ୍ରହ୍ମ ପରମେଶ୍ୱର । ତାଙ୍କ ଛଡ଼ା ଜଗତରେ ଦ୍ୱିତୀୟ ପ୍ରଭୁ କେହି ନାହାନ୍ତି । ତେଣୁ ସେ ତାଙ୍କ ଛଡ଼ା ଅନ୍ୟ କାହାର ଅଧୀନତା ସ୍ୱୀକାର କରନ୍ତି ନାହିଁ ।

"କାହାର ଅଧୀନେ ନ ଥାଉଟି ଆମ୍ଭେ ଶ୍ରୀଗୁରୁ ଚରଣେ ଥାଉ ।
କାହାର ଆଜ୍ଞା ଶିରପରେ ନବହୁ ଗୁରୁ ଆଜ୍ଞା ହେଲେ ଯାଉ ॥
ରାଜାର ପରଜା ନୋହୁ ଆମ୍ଭେ ସିନା ନୋହୁ ସାହୁର ଖାତକ ।
ଗୁରୁ ନେବେ ଯହିଁ ତହିଁ ଆମ୍ଭେ ଯାଉ କେ ଅବା କରୁ ଅଟକ ।

ମନୁଷ୍ୟର ଯେତେ ଯେତେ ଅଧିକାର ଅଛି ତନ୍ମଧ୍ୟରେ ବାସ କରିବାର ଅଧିକାର ଅନ୍ୟତମ । ଏ ଜଗତକୁ ସୃଷ୍ଟି କରିଛନ୍ତି ସ୍ୱୟଂ ଭଗବାନ । ତେଣୁ ଏଠାରେ ବାସକରିବାର ଅଧିକାରରୁ ମନୁଷ୍ୟକୁ ବଞ୍ଚିତକରିବାର ଅଧିକାର ଅନ୍ୟ କାହାରି ନାହିଁ । ଏହା ମନୁଷ୍ୟର ଏକ ମୌଳିକ ଅଧିକାର ।

ଶୂନ୍ୟ ବ୍ରହ୍ମଙ୍କର ଏ ପିଣ୍ଡ ବ୍ରହ୍ମାଣ୍ଡ ନୁହଇ କାହାରି ମାଟି ।
ମାଟି ପଥରକୁ ମେଦାମେଦ କରି ବନାଇଲେ ଛେଚକୁଟି ।।
ଗୁରୁଙ୍କ ଅର୍ଜିଲା ମେଦନୀ ଅଛୁ ନାହିଁ କାହା ଅଧିକାର ।
ପଳାଇ ମନ କଲେ ଆମ୍ଭ ସୁଖେ ଅମ୍ଭେ ଯିବୁ ଦଶିବ ଯେଉଁ ବସ୍ତିର ।।
ନ ସହିବେ ଯେବେ କେ କସ କରିବ ଧରଣୀ ତ ଅଛୁ ସହି ।
ଧରଣୀ ଯେବେ ଯହିଁ ସହିପାରିବ ବୋଲିବ ନପାରେ ବୋହି ।।
ସେଠାରୁ ଆଗକୁ ଯେମନ୍ତ ଦଶିବ ବସ୍ତିର କରିବୁ କଥା ।
ଯାହା ପାଖିଥିବ ହୃଦସ୍ଥ ବୁଦ୍ଧି ଗୁରୁଦେବ ସାମରଥା ।।
ଧରଣୀ କାହାକୁ ସହି ନ ପାରଇ ଏ ଅଟେ ବିଚିତ୍ର ଧନ୍ଦା ।
ବାରିନିଧି ଯେବେ କୂଳ ଲଙ୍ଘି ଯିବ କାହାକୁ ହୋଇବ ନିନ୍ଦା ।।

ବିନୋବାବାଭେ ପରବର୍ତ୍ତୀ କାଳରେ ଏହି ଚିନ୍ତାଧାରାର ବଶବର୍ତ୍ତୀ ହୋଇ ଭୂଦାନ ଆନ୍ଦୋଳନ ଆରମ୍ଭ କରିଥିଲେ । ଏଥିରୁ ଭୀମଭୋଇଙ୍କ ବୈପ୍ଳବିକ ଚିନ୍ତାଧାରା ଓ ଅଗ୍ରଗାମୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ଭୀମଭୋଇଙ୍କ ମତରେ ଜଗତର ସକଳ ଧନ ସମ୍ପଦର ଅଧିକାରୀ ସ୍ୱୟଂ ଭଗବାନ । ମନୁଷ୍ୟ କେବଳ ନିମିତ୍ତ ବା ନ୍ୟାସୀ ମାତ୍ର । ତାର ଜୀବିକା ନିର୍ବାହ ପାଇଁ ଯେତିକି ନିହାତି ଆବଶ୍ୟକ ସେତିକି ମାତ୍ର ଗ୍ରହଣ କରି ଅବଶିଷ୍ଟାଂଶ ଜଗତର କଲ୍ୟାଣ ପାଇଁ ବ୍ୟୟ କରିବା ଉଚିତ ।

"ସାଧୁ ହୋଇ କରି ଖାତକ ଠାବରେ ମାଗୁଣା କରିବାର ନୁହେଁ ।
ଅଶେଷ ବ୍ରହ୍ମାଣ୍ଡ ମହାଜନ ଅଟୁ ସଂପତ୍ତି ତୋର ଅକ୍ଷୟ ।।
ତୋହୋ ଦାନାପାଣି ଛପନ କୋଟି ପ୍ରାଣୀ ଖାଇ ସମସ୍ତେ ଅନନ୍ଦ ।
କାହାକୁ କେଉଁ ପରକାରେ ଦେଉଛୁ ତୁ ଜାଣିଛୁ ସେହି ଭେଦ ।।
( ସ୍ତୁତିଚିନ୍ତାମଣି-୪୭ବୋଲି )

ଭୀମଭୋଇ ନାରୀସ୍ୱାଧୀନତାର ପକ୍ଷପାତୀ ଥିଲେ । ପୁରୁଷ ପରି ନାରୀର ଧାର୍ମିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ବ୍ୟାପାରରେ ସକ୍ରିୟ ଅଂଶ ଗ୍ରହଣ କରିବାର ଅଧିକାର ଅଛି ବୋଲି ସେ ସ୍ୱୀକାର କରୁଥିଲେ । ସେଥିପାଇଁ ସେ ତାହାଙ୍କ ଖଲିଆପାଲି ଆଶ୍ରମରେ କେତେକ ନାରୀ ଭକ୍ତଙ୍କୁ ତାଙ୍କ ଅଧ୍ୟାତ୍ମଜୀବନର ସହଯୋଗିନୀ ରୂପେ ଗ୍ରହଣ କରିଥିଲେ । ନାରୀସ୍ୱାଧୀନତା ପ୍ରସଙ୍ଗରେ ଭୀମଭୋଇ କହିଅଛନ୍ତି—

"ନର ଦେହେ ସ୍ୱାମୀ ଜାତ କରିଅଛ ନବଖଣ୍ଡ ମେଦନୀ ମୋତେ ।
ନାରୀ ପୁରୁଷଙ୍କ ସଙ୍ଗତେ ବସିଲେ ବୋଲୁଅଛ ନ ଛୁଇଁବ ତୋତେ ।।

ନିନ୍ଦା ହେଉଛି ଯେ, ଅଲେଖ ମହିମା ଧରମକୁ ।
ନାସ୍ତି ପୁରୁଷରେ ବ୍ରହ୍ମାଣ୍ଡ ରଚିଲେ ଲଜ୍ଜା କି ନୋହୁଛି ତୁମ୍ଭଙ୍କୁ ॥'

ଏଥିରୁ ଭୀମଭୋଇଙ୍କର ଅଗ୍ରଗାମୀ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ । ଜଗତର କଲ୍ୟାଣ ସାଧନ ଥିଲା ଭୀମଭୋଇଙ୍କର ଜୀବନର ଚରମ ଲକ୍ଷ୍ୟ । ନିଜର ଭଲମନ୍ଦ ଓ ସୁଖଦୁଃଖ ପ୍ରତି ଭ୍ରୂକ୍ଷେପ ନ କରି ସେ ଜଗତର କଲ୍ୟାଣ ପାଇଁ ପ୍ରଭୁଙ୍କର ଚରଣ ଅରବିନ୍ଦରେ ନିଜକୁ ସମ୍ପୂର୍ଣ୍ଣଭାବରେ ଉତ୍ସର୍ଗ କରିଦେଇଛନ୍ତି ଏବଂ ତ୍ରିଭୁବନ ଲୋକଙ୍କ ରକ୍ଷା ପାଇଁ ପ୍ରଭୁଙ୍କଠାରେ ପ୍ରାର୍ଥନା କରିଛନ୍ତି—

''ମୋର ପିଣ୍ଡ ପ୍ରାଣ ଦେଇଅଛି ଦାନ ଅଲେଖ ପୁରୁଷ ପାଦେ ।
ଶ୍ରୀ ଶ୍ରୁମୁଖରେ ମୁହିଁ ବ୍ରହ୍ମାଣ୍ଡର ପାଇଁ ଜଣାଣ କରୁଛି ଏବେ ॥
ଗୁରୁଙ୍କର ପିଣ୍ଡ ଗୁରୁଙ୍କ ବ୍ରହ୍ମାଣ୍ଡ ଗୁରୁଙ୍କର ତ୍ରିନପୁର ।
ସପତ ବ୍ରହ୍ମାଣ୍ଡ ଚଉଦ ଭୁବନ ଦୟାକରି ରକ୍ଷାକର ॥

ଜଗତରେ ଶାନ୍ତି ସ୍ଥାପନ ପାଇଁ ପ୍ରଭୁଙ୍କଠାରେ ସେ କାତର ନିବେଦନ ଜଣାଇଛନ୍ତି ।

''ଜାଣି ଜାଣି କରି ନାମବ୍ରହ୍ମଧରି କେହି କାହାକୁ ନମାନି ।
ବ୍ରହ୍ମାଣ୍ଡ ଭିତରେ ଦେହଧରି ଯେତେ ହେଉଛନ୍ତି ଅନାଥନି ॥
ଯେଉଁ ରୂପେ ଏହି ଶାନ୍ତି କି ଲଭିବେ ସେହି ରୂପେ ହେଉ ଦୟା ।
ଏ କଳି ସାଗର ଧର୍ମରେ ନିବାର ଛୁଡ଼ିଯାଉ ଦ୍ବନ୍ଦ ମାୟା ॥

ବିଶ୍ୱଶାନ୍ତି ପାଇଁ କବି ପ୍ରାଣର ଏହି ବ୍ୟାକୁଳତା ପ୍ରଣିଧାନଯୋଗ୍ୟ । କଳିଯୁଗରେ ପ୍ରାଣୀମାନଙ୍କର ଅନ୍ୟାୟ, ଅତ୍ୟାଚାର ଦେଖି କବିଙ୍କର ପ୍ରାଣ ଅଧୀର ହୋଇପଡ଼ିଛି ଏବଂ ଜଗତକୁ ଏହି ବିପଦରୁ ରକ୍ଷା କରିବା ପାଇଁ ପ୍ରଭୁଙ୍କୁ କାତର ନିବେଦନ ଜଣାଇଛନ୍ତି ।

"ଦେଖ ଏ ବ୍ରହ୍ମାଣ୍ଡ କେମନ୍ତ ହେଲାଣି ଦନୁଦନ ମହାଘୋର ।
କୋଟି କୋଟି ଜୀବ ଅଚେତ ହେବାରୁ ଡାକୁଛି ମୁଁ ନିରନ୍ତର ॥
ତିନି ବ୍ରହ୍ମାଣ୍ଡରେ ଯେତେ ଜୀବଛନ୍ତି ଇଜତ ନାହିଁ ନା କିଛି ।
ମାୟାକୁ ତେଜିଲେ କାଳକୁ ବଧିଲେ ତେବେ ପ୍ରତିକାର ଅଛି ॥
ଅନ୍ତର୍ଯାମୀ ଗୁରୁ ତାରି ମୁକ୍ତି ଦୟାକର ।
ସଦେହରେ ଏହି ନର୍କେ ପଡ଼ିଛନ୍ତି ଧୋଇ ପଖାଳି ଉଦ୍ଧର ॥

ଭକ୍ତକବି ଭୀମଭୋଇଙ୍କର ଏହି ବିଶ୍ୱପ୍ରାଣତାର ପଟାନ୍ତର ନାହିଁ ।

ଭକ୍ତକବି ଭୀମଭୋଇ ତାହାଙ୍କ ସମସାମୟିକ ସମାଜରେ ନୈତିକ ମୂଲ୍ୟବୋଧର ଘୋର ଅଧୋଗତି ଦେଖି ଅତ୍ୟନ୍ତ ବିବ୍ରତ ଓ ବିଚଳିତ ହୋଇପଡ଼ିଛନ୍ତି । ସମାଜରୁ ଦୟା, କ୍ଷମା, ଶାନ୍ତି, ସତ୍ୟ, ନ୍ୟାୟ ଓ ଶୀଳ କ୍ରମେ ଲୋପ ପାଉଥିବା ଦେଖି ତାଙ୍କର ଆତ୍ମା ଅଧୀର ହୋଇପଡ଼ିଛି । ସେ ଏହି ନୈତିକ ଅଧୋଗତିକୁ କଳିଯୁଗ ନାମରେ ଅଭିହିତ କରିଛନ୍ତି । କଳି ପୁରୁଷର ପ୍ରାଦୁର୍ଭାବ ହେତୁ ଦେଶର ସଭ୍ୟତା ଓ ସଂସ୍କୃତି ଲୋପ

# ବିପ୍ଳବୀ ଭୀମଭୋଇ

ଭୀମଭୋଇ ମହିମା ଧର୍ମର ଜଣେ ପ୍ରଧାନ ଭକ୍ତ ଥିଲେ । ପ୍ରବୃଦ୍ଧଗୁରୁ ମହିମା ସ୍ୱାମୀଙ୍କର ଚରଣାରବିନ୍ଦରେ ନିଜର ସର୍ବସ୍ୱ ଅର୍ପଣ କରିଦେଇ ସେ ତାଙ୍କର ସେବା ଓ ଆରାଧନାରେ ଆପଣାକୁ ଉତ୍ସର୍ଗ କରିଦେଇଥିଲେ । ଅସଂଖ୍ୟ ସ୍ତୁତି, ଜଣାଣ, ଭଜନ, ଚଉତିଶା-ମାଧ୍ୟମରେ ସେ ଶୂନ୍ୟପୁରୁଷ ଅଲେଖ ପରଂବ୍ରହ୍ମଙ୍କର ମହିମା ଗାନ କରିଅଛନ୍ତି । ତାଙ୍କର ପ୍ରତ୍ୟେକ ରଚନା ଗୁରୁପଦ ବନ୍ଦନାରେ ଆରମ୍ଭ ଓ ଶେଷହୋଇଅଛି । ସେ ନିଜକୁ ଦାସ, ଅର୍ଶିତ, ମୂଢ଼, ଅଧମ, ପାମର ଓ ଅଜ୍ଞାନ ବୋଲି କହି ବାରମ୍ବାର ନିଜର ଦୀନତା, ବିନୟ ଓ ନମ୍ରତା ପ୍ରକାଶ କରିଅଛନ୍ତି । ହେଲେ ଏହିସବୁ ଆବେଦନ, ନିବେଦନ ଓ ସ୍ତୁତି ଜଣାଣ ଅନ୍ତରାଳରୁ ଉଙ୍କି ମାରିଉଠେ ଏକ ଉତ୍ତୁଙ୍ଗ, ଅନମନୀୟ ଓ ବଳିଷ୍ଠ ବ୍ୟକ୍ତିତ୍ୱର ଝଲକ ଯାହା କାହାରି ନିକଟରେ ପରାଜୟ ସ୍ୱୀକାର କରିବାକୁ ଚାହେଁ ନାହିଁ । ବେଳେ ବେଳେ ସେ ନିଜର ହୃଦୟବଲ୍ଲଭ, ପ୍ରାଣପତି ପ୍ରବୃଦ୍ଧଗୁରୁ ମହିମାସ୍ୱାମୀଙ୍କର ଈଶ୍ୱରର ଯୌକ୍ତିକତା ସମ୍ବନ୍ଧରେ ପ୍ରଶ୍ନ କରିବାକୁ ମଧ୍ୟ କୁଣ୍ଠାବୋଧ କରିନାହାନ୍ତି ।

"ଭୁଲାଉଛ କେତେ କହି ନାନା ମତେ ବୃଥାମଣା ନାହିଁ ବେଗ ।
ଛାଡ଼ିଦିଅ ମୋତେ ଗୁରୁଦେବ ସ୍ୱାମୀ ଭରଣା କରିବି ଯୁଗ ॥

ତାଙ୍କର ଅଟଳ ପ୍ରତିଜ୍ଞା ନିକଟରେ ମସ୍ତକ ଅବନତ ହୋଇଯାଏ ।

କହୁଛି ସଂସାରେ ସତେଇଶ ଅଙ୍କରେ ସାଧନ ନୋହିଲେ ପୃଥ୍ୱୀ ।
ନିଷ୍ଠୁର ବଚନ ସାଧୁସୁଜ୍ଞଜନ ଶୁଣ ଶୁଣ ମୋର ସ୍ତୁତି ।
ବସିଥାଇ କୂଳ ମହାନଦୀ ଜଳ ଛୁଇଁଅଛି ସତ୍ୟକରି ।
ଧର୍ମକୁ ଲଙ୍ଘି ସୁରାପାନ କରିବି ହରିବି ବ୍ରାହ୍ମଣ ସ୍ତ୍ରୀ ॥ (ସ୍ତୁ. ଚି. ୬୨ ବୋଲି)

ଭୀମଭୋଇଙ୍କର ଏ ବାଣୀ ବିପ୍ଳବର ବାଣୀ । ଯଥାର୍ଥରେ ଭୀମଭୋଇ ଥିଲେ ଜଣେ ବିପ୍ଳବୀ । ତାଙ୍କର କବିତାଚୟ ପାଠକଲାବେଳେ ବିପ୍ଳବର ମୃଦୁପଦଧ୍ୱନି ପାଠକ ପ୍ରାଣରେ ଅପୂର୍ବ ହିଲ୍ଲୋଳ ସୃଷ୍ଟି କରିଥାଏ । ବିପ୍ଳବ ନାଁ ଶୁଣି ଚମକି ଉଠିବା ଠିକ୍ ନୁହେଁ । ଭଗବାନ ଶ୍ରୀକୃଷ୍ଣ, ଶାକ୍ୟମୁନି ଭଗବାନ ତଥାଗତ ଓ ମହାତ୍ମା ଯିଶୁଖ୍ରୀଷ୍ଟ ଥିଲେ ମହାନ୍ ବିପ୍ଳବୀ । ସେମାନଙ୍କୁ ସମସ୍ତଙ୍କୁ ସତ୍ୟର ପ୍ରତିଷ୍ଠା ପାଇଁ ସମସାମୟିକ ସମାଜ ବିରୁଦ୍ଧରେ ସଂଗ୍ରାମ କରିବାକୁ ହୋଇଥିଲା । ଏହି ଅର୍ଥରେ ଭୀମଭୋଇ ଥିଲେ ଜଣେ ପରମ ବିପ୍ଳବୀ । ସତ୍ୟର ସନ୍ଧାନ ଓ ସତ୍ୟାନୁସରଣ ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ପାନ, ଭୋଜନ, ଶୟନଠାରୁ ଆରମ୍ଭ କରି ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସତ୍ୟର ଅନୁସରଣ କରୁଥିଲେ । ଅହିଂସା ଥିଲା ତାଙ୍କ ଜୀବନର ଅନ୍ୟତମ ବ୍ରତ । ତାହାଙ୍କ ଦ୍ୱାରା କଳ୍ପିତ ଓ ପ୍ରଚାରିତ ସତ୍ୟ ମହିମା ସମାଜର ଭିତ୍ତିଭୂମି ଥିଲା ସତ୍ୟ ଓ ଅହିଂସା । ଏଥିପାଇଁ ସେ ଚରମ ନିର୍ଯାତନା ଭୋଗକରି

ପାଇବାକୁ ବସିଛୁ । ସମସାମୟିକ ସମାଜକୁ ଚେତାବନି ଶୁଣାଇ ଭୀମଭୋଇ କହିଅଛନ୍ତି ଯେ ଏହାକୁ ଯଦି ରୋକାନଯାଏ ତାହାହେଲେ ଧ୍ୱଂସ ଅନିବାର୍ଯ୍ୟ । ତେଣୁ ସେ ଭଗବାନଙ୍କଠାରେ ପ୍ରାର୍ଥନା କରିଛନ୍ତି ଯେ ସେ ଆସି ବିଶ୍ୱଭୁବନକୁ ଆସନ୍ନ ଧ୍ୱଂସ ମୁଖରୁ ରକ୍ଷା କରନ୍ତୁ ।

"ଅନାଦି ପୁରୁଷ ଅନ୍ତରେ ବିଗ୍ଭରି ରଖ ଏବେ ନବଖଣ୍ଡ ମସ୍ତି ।
ଅନାଥନରେ ହୋ ଘୋଟିଲାଣି ଆସି ପୁରି ଉଦନ ।
କାହାରି ହୃଦରେ ବିବେକ ନାହିଁ ନା ଅଜ୍ଞାନ ହେଲେଣି ଋଷି ମୁନି ।
ଛୋକାଇଲାଣି ଏକ ଘରେ ସବୁଙ୍କୁ ତ୍ରିଗୁଣ ରଜ୍ଜୁରେ ବାନ୍ଧିକରି ।
ଡାକୁଣି କବାଟ ଦେଇ ନରକରେ ମାଡ଼ ମାରୁଅଛୁ ଗ୍ରନ୍ଥଧରି ।
କାହାରିହୃଦରେ ଜ୍ଞାନ ରହୁ ନାହିଁ ଭବବନେ
ଡାକ ଡାକ କଣ୍ଠ ପ୍ରଭୁ ଶୁଖିଲା ଶୁଭୁଛୁ କି ନାହିଁ ଗୋ ଗୁହାରି ।
ତେଙ୍ଗା ଜଗତରୁ ଓଲ୍ଟାଇ ଆପଣ ଅସ୍ତ୍ର କରି ରଖ ବସୁନ୍ଧରୀ ।।"

ଧନବାନ୍ ଓ କ୍ଷମତାଶାଳୀ ଲୋକଙ୍କର ଅନ୍ୟାୟ ଅତ୍ୟାଚାରରୁ ସାଧାରଣ ଦରିଦ୍ର ପ୍ରଜା ଅଶେଷ ଦୁଃଖ ଯନ୍ତ୍ରଣା ଭୋଗ କରୁଛନ୍ତି । ଅନ୍ନ କଷ୍ଟରେ ସେମାନଙ୍କର ପ୍ରାଣ ଯିବା ଉପରେ । ତେଣୁ ଭୀମ ଭୋଇ ସେହି ପାପାତ୍ମାମାନଙ୍କୁ ଉପଯୁକ୍ତ ଶାସ୍ତି ପ୍ରଦାନକରି ଜଗତକୁ ଉଦ୍ଧାର କରିବା ନିମିତ୍ତ ଭଗବାନଙ୍କୁ ନିବେଦନ କରିଛନ୍ତି—

"ଘୋର ଦୋଷ ପାପ କଲେ ଯେଉଁ ନରେ କେତେ ଦିଅ ତାଙ୍କ ଗଳେ ଚୁଣ୍ଟି ।
ଘୃଣ୍ଟି ପଳାଉଛ ପଛକୁ କାହିଁକି ବ୍ରହ୍ମାଣ୍ଡକୁ ସ୍ୱାମୀ ତରିକରି ।।"

ଏହା ଯଥାର୍ଥରେ କବି କବିଙ୍କର ସାମାଜିକ ବିପ୍ଳବ ପାଇଁ ଏକ ଦୃପ୍ତ ଆହ୍ୱାନ । ଭୀମଭୋଇଙ୍କର ବିଶ୍ୱାସ ଥିଲା ଯେ ସତ୍ୟମହିମାଧର୍ମର ପ୍ରସାର ଫଳରେ ସମାଜରେ ଏକ ଅହିଂସ ବିପ୍ଳବ ସଂଘଟିତ ହେବ ଏବଂ ପୃଥିବୀରେ ଏକ ନବଯୁଗର ଅଭ୍ୟୁଦୟ ହେବ । ଭୀମଭୋଇ ଅପୂର୍ବ ସାହସର ସହିତ ଏହି ବିପ୍ଳବର ନେତୃତ୍ୱ ନେବା ପାଇଁ ଆଗେଇ ଆସିଛନ୍ତି ।

"ପୃଥ୍ୱୀ ମଧ୍ୟେ କରିବି ବିଶ୍ରାମ, ପଥ ଦିଅନ୍ତୁ ମୋତେ ନିଷ୍କାମ ।
ପିଣ୍ଡ ଯାଉ ରହୁ ଯଶ ଧର୍ମ ହେ ।
ଫେଡ଼ିବି ବନ୍ଧନ ଫିଟାଇ ବି ଦୁଃଖ ଫଳ ବାଣ୍ଟିଦେବି ଦେଖ ।
× × ×
ଫନ୍ଦା ନୂଆ ଥିବ ବାଡ଼ ହେବ, ପୁରୁଣାରେ ସମସ୍ତେ ରହିବ ।
ଫଳ ପରଖିବେ ସର୍ବଦେବ ହେ ।"

ଦଳିତ ନିଷ୍ପେଷିତ ଦରିଦ୍ର ଜନତାର ଦୁଃଖରେ କବି ଭୀମଭୋଇଙ୍କ ପ୍ରାଣ ଅଧୀର ହୋଇଉଠିଛୁ । ଯୁଗଯୁଗର ଆଳସ୍ୟ ଓ ଅବସାଦ ପରିହାର କରି ଜାଗ୍ରତ ହେବା ପାଇଁ ସେ ସେମାନଙ୍କୁ ନିବେଦନ କରିଛନ୍ତି ।

"ଶୁଖିଲା ନାବରେ ପାଣି ପଶିଯିବ ସମସ୍ତେ ଥାଅ ସାକ୍ଷୀ ।
ସୁଖ ନାହିଁ ମୋତେ ଭୂମିପାଇଁ ମୁହିଁ ଦିବସ ରଜନୀ ଦୁଃଖୀରେ, ସୁମନା
ଶେଷ ପାହାନ୍ତି ହେଲାଣି ଆସି, ଶୋଇଅଛ ସର୍ବେ ଉଠ ଚେତ ।"

ଏହା ପାଠକଲାବେଳେ ଉପନିଷଦର ସେହି ମହାନ୍ ବାଣୀ "ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ" ଆମର ସ୍ମୃତିପଥାରୂଢ଼ ହୁଏ ।

ଭୀମଭୋଇଙ୍କ ସମସାମୟିକ ସମାଜରେ ବ୍ରାହ୍ମଣ ଓ ଅନ୍ୟ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଲୋକେ ମହିମାଧର୍ମର ପ୍ରଗତିଶୀଳ କାର୍ଯ୍ୟକ୍ରମ ଓ ପ୍ରସାର ବିରୁଦ୍ଧରେ ଘୋର ଅନ୍ତରାୟ ସୃଷ୍ଟି କରୁଥିଲେ । ସେଥିପାଇଁ ଭୀମଭୋଇ ସେମାନଙ୍କ ବିରୁଦ୍ଧରେ ବ୍ୟଙ୍ଗ ବିଦ୍ରୂପର ଶାଣିତ ଖଡ୍ଗ ଉତ୍ତୋଳନ କରିଛନ୍ତି ।

"ବ୍ରାହ୍ମଣୀମାନେ ଯେ ଧର୍ମକୁ ଛାଡ଼ିଣ ବେଶ୍ୟାବୃତ୍ତି ଆଚରିଲେ ।
ବ୍ରାହ୍ମଣ ଗାୟତ୍ରୀ ମନ୍ତ୍ରକୁ ଛାଡ଼ିଣ ବାଣିଜ୍ୟ ବେପାର କଲେ ଯେ
ବକଲେ ଜପି ସଙ୍ଗ, ମୀନ ମାରିବାକୁ ହେଲେଣି ଅଗ ।।"

ମହିମାଧର୍ମ ଏକ ଏକେଶ୍ୱରବାଦୀ ଧର୍ମ । ଦେବାଦେବୀ ଅର୍ଚ୍ଚନା ଓ ପ୍ରତିମା ପୂଜାର ଏହା ଘୋର ବିରୋଧ କରେ । ଭୀମଭୋଇ ରାଜାରାମମୋହନ ରାୟ ଓ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଭଳି ପ୍ରତିମା ପୂଜାର କଠୋର ସମାଲୋଚନା କରିଛନ୍ତି ।

ଅଚେତାରେ ପିନ୍ଧା ଜନ ପ୍ରାଣୀମାନେ କରୁଛନ୍ତି ଦେବ ପୂଜା ।
ପାଦେ ପଡ଼ି ରକ୍ଷାକର ବୋଲୁଛନ୍ତି ଦେଇଥିଲି ପୁର ଖଜା ।।
ମୂର୍ତ୍ତି ପିନ୍ଧା ସେହି ଜୀବ ଅସ୍ଥା ନାହିଁ କାହୁଁ ଯାଚି ଦେବେ ବର ।
ବସ୍ତୁ ନିଷ୍କୁଟ ମାୟାକୁ ନ ଜାଣି ଅଜ୍ଞାନରେ ମୂଢ଼ ନର ।।
ଯେହୁ ଗଢ଼ିଛୁ ଆପଣା ପିଣ୍ଡ ପ୍ରାଣ ତାକୁ ସମର୍ପଣ ନାହିଁ ।
ତାକୁ ପ୍ରତିମା ମୂର୍ତ୍ତିକି ବୋଲୁଛନ୍ତି ପ୍ରାଣକୁ ବିଷାଅ ଭୁହି ।।

ଆଜି ସମଗ୍ର ବିଶ୍ୱରେ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ସଂଗ୍ରାମ ଚାଲିଛି ଏବଂ ପ୍ରାକୃତିକ ପରିବେଶ ଓ ପ୍ରାଣୀ ଜଗତର ସୁରକ୍ଷା ପାଇଁ ଆନ୍ଦୋଳନ ଆରମ୍ଭ ହୋଇଛି । କିନ୍ତୁ ଆଜିକୁ ୧୩୦ ବର୍ଷ ତଳେ ଆଦିବାସୀ କବି ଭୀମ ଭୋଇ ଏଥିପାଇଁ ବଳିଷ୍ଠ ଯୁକ୍ତି ବାଢ଼ିଥିଲେ । ସୋଭିଏଟ ରୁଷିଆରେ ସାମ୍ୟବାଦର ଅଭ୍ୟୁଦୟ ପୂର୍ବରୁ ଭୀମଭୋଇ ଏକ ସ୍ୱାଧୀନ ଶୋଷଣ ରହିତ ମୁକ୍ତ ସମାଜର ପ୍ରତିଷ୍ଠା ପାଇଁ ଆହ୍ୱାନ ଦେଇଥିଲେ । ସେ ସମଗ୍ର ମାନବ ଜାତି ଓ ପ୍ରାଣୀ ଜଗତର ଐକ୍ୟ ବିଧାନ ପାଇଁ ପ୍ରାଣପାତ କରିଥିଲେ । ଏଥିପାଇଁ କବି ଭୀମଭୋଇ ଓଡ଼ିଆ ଜାତିର ଚିର ନମସ୍ୟ ହୋଇ ରହିବେ ।

ଭୀମଭୋଇଙ୍କ ରଚନା ସମୂହରୁ ତାହାଙ୍କ ଗଭୀର ସ୍ୱଦେଶ ପ୍ରୀତିର ପରିଚୟ ମିଳେ । ଆଗତ ଭବିଷ୍ୟତ ବାଣୀ ଛଳରେ ଇଂରେଜମାନଙ୍କର ଓଡ଼ିଶା ଆକ୍ରମଣର ଘୋର ନିନ୍ଦା କରିଛନ୍ତି ଏବଂ ସେତେବେଳେ ଯେଉଁ ରାଜାମାନେ ନିଜନିଜର ସ୍ୱାର୍ଥ ସାଧନ ପାଇଁ

ଇଂରେଜମାନଙ୍କର ସହାୟତା କରିଥିଲେ କମ୍ବା ନୀରବ ରହିଥିଲେ ସେମାନଙ୍କର କଠୋର ସମାଲୋଚନା କରିଛନ୍ତି । ପରାଧୀନ ଦେଶରେ ଲୋକମାନଙ୍କର ଦୁର୍ଦ୍ଦଶା ଦର୍ଶନ କରି ସେ ଅତ୍ୟନ୍ତ କାତର ହୋଇପଡ଼ିଛନ୍ତି ।

"କାହିଁ ମୁଁ ଲୁଚିବି କେମନ୍ତେ ବଞ୍ଚିବି ପଳାଇବି କେଉଁ ପଥେ ।
ପ୍ରାଣୀଙ୍କ କଷଣ କେତେ ମୁଁ ସହିବି ବିପତ୍ତି ପଡ଼ିବ ଯେତେ ॥
ଜଗତ କଥା ଯେତେକ ବ୍ୟବସ୍ଥା ଘୋଡ଼ାଇ ରଖିଛୁ ଜାଣି ।
ଭକ୍ତଙ୍କ ଜୀବନ ନ ରହିବ ପିଣ୍ଡେ କାତର ହୋଇବି ଗୁଣି ॥
ଆସିବେ ଯବନ ମାଡ଼ି ଘୋରବନ କରିସିବେ ସମସ୍ତଙ୍କ ।
ତରୁଳତା ମାନ ଛେଦି ପକାଇବେ ନ ରହିବ ଡ଼ାଳପତ୍ର ॥
ଗନ୍ଧପରକଟ ହୋଇ ଛଟପଟ ମଶା ଲେଟୁଥିବେ ମଡ଼ା ।
ଭୂମିରେ ଚରଣ ନ ରହିବ ଜାଣ ମରିସିବେ ହସ୍ତୀ ଘୋଡ଼ା ॥
ରାଜାମାନେ ତହିଁ ଯୁଦ୍ଧେ ପିଠି ଦେଇ ଥୋକାଏ ଆରମ୍ଭି ଭେକ ।
ପାଇକମାନଙ୍କୁ ଆପେ ଡ଼ାକୁଥିବେ ବୋଲୁଥିବେ ଛେକ ଛେକ ॥
ରଣ ଯୁଦ୍ଧ ଯେତେ ସମ୍ଭାଳିବେ କେତେ କାହାର ନ ଥିବ ସାକ୍ଷ ।
ଯେଣ୍ଟା ସୁଖେ ଯେଣ୍ଟା ପଳାଇ ପଶିବେ ରଙ୍କଭଣ ହୋଇ ଲୋକ ।"

ଏଥିରେ ଓଡ଼ିଶା ସିପାହି ବିଦ୍ରୋହର ସଙ୍କେତ ସୁସ୍ପଷ୍ଟ ।

ଭୀମଭୋଇ ଆଗତ ଭବିଷ୍ୟତ ବାଣୀ ଛଳରେ ୧୮୫୭ ମସିହାର ସିପାହି ବିଦ୍ରୋହର ଏକ ଭୟାବହ ଚିତ୍ର ମଧ୍ୟ ଅଙ୍କନ କରିଛନ୍ତି ।

କଳିଯୁଗେ ଏ ଧର୍ମ ଉଦିତ ଏଠାରୁ ନାହିଁନା ବଡ଼ ।
ମହିମା ନାମ ଯେଉଁ ପଦ ଅଙ୍ଗୀକରିତ ଖଣ୍ଡାଦାଢ଼ ॥
କର୍ମିବ ମେଦିନୀ ରଣଗୋଳ ଧ୍ୱନି ସ୍ୱର୍ଗ ପାତାଳକୁ ଭେଦି ।
ଅଠର ଦିବସ ଜମ୍ବୁଦ୍ୱୀପ ମଧ୍ୟେ ବହିବ ରକତ ନଦୀ ॥

୧୮୫୭ ମସିହାକୁ ଭୀମଭୋଇଙ୍କ ଦଶ ଏଗାର ବର୍ଷ ବୟସ ହୋଇଥିବ । ସେ ସିପାହି ବିଦ୍ରୋହର ଲୋମହର୍ଷଣକାରୀ ସମ୍ବାଦ ଶୁଣିଥିବେ । ଦେଶପ୍ରାଣ ଭୀମଭୋଇ ସେହି ଅଭୁଲା ସ୍ମୃତିକୁ ତାଙ୍କର କବିତାରେ ୫୨ ବର୍ଷ ପରେ ଲିପିବଦ୍ଧ କରିଥିବା ଅସମ୍ଭବ ନୁହେଁ । ଦେଶପ୍ରାଣ ଭୀମଭୋଇଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ଭାରତ କଦାପି ପରାଧୀନତାକୁ ସ୍ୱୀକାର କରିବ ନାହିଁ । ଦିନେ ନା ଦିନେ ଭାରତ ସ୍ୱାଧୀନ ହେବ । ତେଣୁ ସେ ଗାଇଛନ୍ତି—

"ଫିରିଙ୍ଗି ଆସିବ ଭାଙ୍ଗି ନ ପାରିବ ରହିବ ତା ନିଜ ସ୍ଥାନେ ।
ସାକ୍ଷୀରୂପେ ଦେବତାଏ ଦେଖୁଥିବେ ରହି ଅଧା ସ୍ୱର୍ଗେ ଶୂନ୍ୟେ ॥"

ଏହିସବୁ ଦୃଷ୍ଟିରୁ ଭୀମଭୋଇଙ୍କୁ ଉତ୍କଳର ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଭୀମଭୋଇ ସ୍ତ୍ରୀ-ସ୍ୱାଧୀନତା ସଙ୍ଗେ ସ୍ତ୍ରୀ ପୁରୁଷ ସାମ୍ୟ ପ୍ରଚାର କରିଯାଇଛନ୍ତି ।

"ବ୍ରହ୍ମ ଜଗତରେ ଆଉ ବର୍ଣ୍ଣଭେଦ ନାହିଁ ।
ଯେ ଭେଦ କରଇ କୁମ୍ଭୀ ନର୍କରେ ପଡ଼ଇ ॥
ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ ।
ସ୍ତ୍ରୀ ପୁରୁଷ ତହିଁ ନାହିଁ ବଡ଼ ସାନ ॥
ଯେଉଁ ବ୍ରହ୍ମେ ବେନି ଜନେ ହୋଇଛନ୍ତି ଜାତ ।
କାହୁଁ ବର୍ଣ୍ଣଭେଦ ବିନା ରହିଲା କଥାତ ॥
ସ୍ତ୍ରୀ ଯେ ପୁରୁଷ ଏହି ରଚନାର ମୂଳ ।
ଯୁଗଳ ପଣ୍ଟାତେ ବିନା ସବୁ ହେଲା ଠୁଳ ॥"

ଉପରୋକ୍ତ ଆଲୋଚନାରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ, ଭୀମଭୋଇ କେବଳ ଜଣେ ମହିମା ଭକ୍ତ ନ ଥିଲେ, ସେ ଉତ୍କଳର ସାମାଜିକ, ଧାର୍ମିକ, ନୈତିକ ଓ ସାଂସ୍କୃତିକ ଜୀବନରେ ଏକ ବିପ୍ଳବ ଆଣିବା ପାଇଁ ସଂଗ୍ରାମ କରିଥିଲେ ।

---

# ଓଡ଼ିଆ ସାହିତ୍ୟକୁ ଭୀମଭୋଇଙ୍କ ଅବଦାନ

ସାରଳା, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ କିମ୍ବା ଅଭିମନ୍ୟୁ ସାମନ୍ତସିଂହାରଙ୍କ ପରି ଭୀମଭୋଇ କୌଣସି ଉଚ୍ଚାଙ୍ଗ କାବ୍ୟ ରଚନା କରିନାହାନ୍ତି । ତାହାଙ୍କ ରଚନା କାହାଣୀଧର୍ମୀ ନୁହେଁ କିମ୍ବା କୌଣସି ନାୟକ-ନାୟିକାର ଜୀବନକୁ କେନ୍ଦ୍ର କରି ରଚିତ ହୋଇନାହିଁ । କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ, ସାଲବେଗ ଓ ବନମାଳୀଙ୍କ ପରି ସେ ଜଣେ ଗୀତିକବି । ଉପରୋକ୍ତ କବିମାନଙ୍କ ରଚନା ମୁଖ୍ୟତଃ ରାଧାକୃଷ୍ଣ ପ୍ରେମାବଲମ୍ବନରେ ରଚିତ ହୋଇଥିବାରୁ ସେଗୁଡ଼ିକରେ ଯେଉଁ ଧାରାବାହିକତା ଦୃଷ୍ଟ ହୁଏ ଭୀମଭୋଇଙ୍କ ରଚନାବଳୀରେ ତାର ଅବକାଶ ନାହିଁ । କବିତା ପାଇଁ କବିତା ବା କଳାପାଇଁ କଳା ଭୀମଭୋଇଙ୍କ ରଚନାବଳୀର ପ୍ରାଣଧର୍ମ ନୁହେଁ । "କବି ଯେ ସତ ମିଛ କରି କହନ୍ତି । କବିତା ସ୍ୱରୂପରେ ମନ ମୋହନ୍ତି ।" ଦୀନକୃଷ୍ଣଙ୍କର ଏହି ଉକ୍ତି ଭୀମଭୋଇଙ୍କ ପ୍ରତି ପ୍ରଯୁଜ୍ୟ ନୁହେଁ । ଗଜଦନ୍ତ ମିନାର ଉପରେ ବସି ପଦ୍ମଭୂକ୍ କଳ୍ପିତ ସେ ସ୍ୱପ୍ନର ମାୟାପୁରୀ ସୃଷ୍ଟି କରି ନାହାନ୍ତି । କବିଯଶପ୍ରାର୍ଥୀ ହୋଇ ସେ କବିତା ରଚନା କରିନାହାନ୍ତି । ତାଙ୍କର କବିତା ସମ୍ପୂର୍ଣ୍ଣ ଉଦ୍ଦେଶ୍ୟମୂଳକ, ଉପଦେଶାତ୍ମକ ଓ ପ୍ରଚାରଧର୍ମୀ । ମହିମା ଧର୍ମର ପ୍ରଚାର ଓ ପ୍ରସାର ତାଙ୍କ କବିତାର ମୂଳ ଲକ୍ଷ୍ୟ । ଏହାହିଁ ଥିଲା ମହିମା ସ୍ୱାମୀଙ୍କର ଆଦେଶ । ଏହି ଆଦେଶକୁ ଶିରୋଧାର୍ଯ୍ୟ କରି ଭୀମଭୋଇ କବିତା ରଚନାରେ ପ୍ରବୃତ୍ତ ହୋଇଛନ୍ତି ଏବଂ ଏଥିପାଇଁ ଆତ୍ମୋତ୍ସର୍ଗ କରିଛନ୍ତି । ଭୀମଭୋଇଙ୍କର ରଚନାବଳୀର ମୂଲ୍ୟାଙ୍କନ କଲାବେଳେ ଏ ବିଷୟ ବିଚାରକୁ ନେବାକୁ ହେବ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧକୁ ଭୀମଭୋଇଙ୍କର ଆବିର୍ଭାବ କାଳ ବୋଲି ଧରାଯାଏ । ଭାରତ ତଥା ଉତ୍କଳରେ ଏହା ଏକ ନବଜାଗରଣର ଯୁଗ । ଧର୍ମ, ରାଜନୀତି, ଶିକ୍ଷା, ସଂସ୍କୃତି ଆଦି ବିଭିନ୍ନ କ୍ଷେତ୍ରରେ ଏହି ନବଜାଗରଣର ପଦଧ୍ୱନି ଶୁଣିବାକୁ ମିଳେ । ଏତିକିବେଳେ ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀ ଉତ୍କଳୀୟ ସମାଜରେ ଧର୍ମ ନାମରେ ଜାତିଅଣ ଭେଦଭାବ, ପୌରୋହିତ୍ୟ ଓ ପୌତ୍ତଳିକତାର ଯେଉଁ ପ୍ରହସନ ଚାଲି ଆସିଥିଲା ତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ସତ୍ୟ, ଅହିଂସା, ସାମ୍ୟ ଓ ମୈତ୍ରୀ ଉପରେ ଆଧାରିତ ଏକ ନବୀନ ସମାଜର ପ୍ରତିଷ୍ଠା ପାଇଁ ଆହ୍ୱାନ ଦିଅନ୍ତି । ଭୀମଭୋଇ ଏହି ଆହ୍ୱାନକୁ ରୂପାୟିତ କରନ୍ତି ତାଙ୍କର କାବ୍ୟ କବିତା ମାଧ୍ୟମରେ ।

ଏକ ଅଦ୍ୱିତୀୟ ଅଲେଖ ପରଂବ୍ରହ୍ମଙ୍କ ସମ୍ବନ୍ଧରେ ଜନସାଧାରଣଙ୍କ ମଧ୍ୟରେ ଚେତନା ସୃଷ୍ଟି କରିବା ଥିଲା ମହିମା ସ୍ୱାମୀଙ୍କର ମୂଳ ଲକ୍ଷ୍ୟ । ଭୀମଭୋଇ ସମସାମୟିକ ସମାଜର ଧର୍ମାନ୍ଧତା, ପୌତ୍ତଳିକତା, ନାସ୍ତିକତା ଓ ପଳାୟନବାଦ ବିରୁଦ୍ଧରେ ଖଡ୍‌ଗ ଉତ୍ତୋଳନ କରି ଲୋକମାନଙ୍କ ମଧ୍ୟରେ ଏକ ଉଚ୍ଚ ବିଶ୍ୱଚେତନା ସୃଷ୍ଟି ପାଇଁ ଅଣ୍ଟାଭିଡ଼ି ବାହାରିପଡ଼ିଲେ ।

ସେ ବଜ୍ର ଗମ୍ଭୀର ବାଣୀରେ ପ୍ରଚାର କଲେ ଯେ ଈଶ୍ବର ଏକ ଏବଂ ଅଦ୍ୱିତୀୟ । ସେ ଅଲେଖ, ଅବର୍ଣ୍ଣ, ଅରୂପ, ଅଣାକାର, ଅନାଦି, ଅନାମ, ନିର୍ଗୁଣ, ନିରଞ୍ଜନ, ନିର୍ବିକାର ଓ ନିର୍ବିକଳ୍ପ । ସେ ଜଗତର ସୃଷ୍ଟି, ସ୍ଥିତି ଓ ଲୟର କାରଣ । ସେ ଜଗତରେ ସର୍ବତ୍ର ପୂରି ରହିଛନ୍ତି । ତାଙ୍କର ବିନା ଆଦେଶରେ ଘାସ ପତ୍ରଟିଏ ମଧ୍ୟ ହଲୁନାହିଁ । ସେ ସର୍ବକାରଣର କାରଣ । ସେ କୌଣସି ମନ୍ଦିର ବା ଦେବାଳୟରେ ଆତ୍ମଗୋପନ କରିନାହାନ୍ତି—ସମସ୍ତ ବିଶ୍ୱର ଅଣୁ ପରମାଣୁରେ ସେ ପୂରି ରହିଛନ୍ତି । ପ୍ରତି ମନୁଷ୍ୟର ଅନ୍ତରରେ ଜୀବାତ୍ମା ରୂପରେ ସେ ଅବସ୍ଥାନ କରୁଛନ୍ତି । ପ୍ରତ୍ୟେକ ମନୁଷ୍ୟ ଇଚ୍ଛାକଲେ ତାଙ୍କୁ ସହଜରେ ପାଇ ପାରିବ । ତାଙ୍କର ବଂଶୀଧ୍ୱନି ଅହୋରାତ୍ର ନିନାଦିତ ହେଉଛି । ମନୁଷ୍ୟ ଇଚ୍ଛାକଲେ ସେ ଧ୍ୱନି ଶୁଣି ପାରିବ । ପରଂବ୍ରହ୍ମଙ୍କୁ ପାଇବା ପାଇଁ ଯଜ୍ଞ, ହୋମ, ଚାନ୍ଦ୍ରାୟଣାଦି ବ୍ରତ, ତୀର୍ଥଯାତ୍ରା ଆଦିର କୌଣସି ପ୍ରୟୋଜନ ନାହିଁ । ପରିପୂର୍ଣ୍ଣ ଆତ୍ମସମର୍ପଣ, ଅନନ୍ୟ ଭକ୍ତି, ନାମଭଜନ ଓ ଗୁରୁସେବା ଦ୍ୱାରା ଜାତି, ବର୍ଣ୍ଣ ଓ ଲିଙ୍ଗ ନିର୍ବିଶେଷରେ ପ୍ରତ୍ୟେକ ବ୍ୟକ୍ତି ଅଲେଖ ପରଂବ୍ରହ୍ମଙ୍କୁ ପାଇପାରିବ ।

ଭୀମଭୋଇ ତାଙ୍କର ସ୍ତୁତି, ଜଣାଣ, ଭଜନ, ଚଉତିଶା ଓ ଅନ୍ୟାନ୍ୟ କାବ୍ୟ କବିତା ମାଧ୍ୟମରେ ଜନମାନସରେ ବିଭୁଚେତନା ସୃଷ୍ଟି କରିବା ପାଇଁ ଅକ୍ଳାନ୍ତ ଉଦ୍ୟମ କରିଛନ୍ତି । ଭୀମଭୋଇଙ୍କର ଭାଷା ଅତ୍ୟନ୍ତ ସରଳ ଓ ପ୍ରାଣସ୍ପର୍ଶୀ । ପୁଣି ସେ ଯାହା କହିଛନ୍ତି ତାହା ତାଙ୍କର ଅନୁଭୂତିଲବ୍‌ଧ । ତାହାଙ୍କ ଭକ୍ତିର ଆନ୍ତରିକତା ଓ ପ୍ରାଣବତ୍ତା ଜନମାନସକୁ ସ୍ପର୍ଶ କରିଛି ଏବଂ ତାଙ୍କର ଏ ଉଦ୍ୟମରେ ସେ ଅଭୂତପୂର୍ବ ସଫଳତା ଲାଭ କରିଛନ୍ତି । ପ୍ରତ୍ୟେକ ମନୁଷ୍ୟର ଅନ୍ତରରେ ସସୀମରୁ ଅସୀମକୁ, ସାନ୍ତରୁ ଅନନ୍ତକୁ ଏବଂ ଅନୈକ୍ୟରୁ ଐକ୍ୟକୁ ଉଠିବାପାଇଁ ଏକ ଦୁର୍ନିବାର ଆକାଂକ୍ଷା ରହିଛି । ତେଣୁ ଲୁହାକୁ ଚୁମ୍ବକ ଆକର୍ଷଣ କଲାପରି ଭୀମଭୋଇଙ୍କ ବାଣୀ ଜନମାନସକୁ ଆକର୍ଷଣ କଲା । ଏହା ଲୋକମାନଙ୍କ ମଧ୍ୟରେ ଏକ ନବଜାଗରଣ ଆଣିଦେଲା । ଓଡ଼ିଆ ସାହିତ୍ୟରେ ଭକ୍ତି ରସାତ୍ମକ କାବ୍ୟର ଅଭାବ ନାହିଁ । କିନ୍ତୁ ଭୀମଭୋଇ ଯେପରି ଭାବରେ ଏହା ଉପସ୍ଥାପିତ କଲେ ତାର ଅଭିନବତ୍ୱ ଶ୍ରୋତା ଓ ପାଠକମାନଙ୍କ ଚିତ୍ତକୁ ଅଭିଭୂତ କଲା । ପରବର୍ତ୍ତୀକାଳରେ ଭକ୍ତକବି ମଧୁସୂଦନ ରାଓ ପଦ୍ୟରେ ଏବଂ ବିଶ୍ୱନାଥ କର ଗଦ୍ୟରେ ଲୋକରେ ବିଭୁଚେତନା ସୃଷ୍ଟି କରି ପ୍ରସିଦ୍ଧି ଲାଭ କରିଛନ୍ତି ।

ଭୀମଭୋଇଙ୍କର 'ସ୍ତୁତିଚିନ୍ତାମଣି' ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ଏହା ରବୀନ୍ଦ୍ରନାଥ ଠାକୁରଙ୍କର 'ଗୀତାଞ୍ଜଳି' ସଙ୍ଗେ ତୁଳନୀୟ । ଗୀତାଞ୍ଜଳିରେ ଯେପରି ଉପନିଷଦ୍‌ର ମହାନ୍ ବାଣୀକୁ ରୂପାୟିତ କରାଯାଇଛି, ସ୍ତୁତିଚିନ୍ତାମଣିରେ ସେହିପରି ଉପନିଷଦ୍‌ର ମହାନ୍ ସତ୍ୟକୁ ବାଣୀରୂପ ପ୍ରଦାନ କରାଯାଇଛି । ଭୀମଭୋଇ ଆଉ କୌଣସି ଗ୍ରନ୍ଥ ନ ଲେଖି ଏହି ଖଣ୍ଡିକ ମାତ୍ର ଗ୍ରନ୍ଥ ଲେଖିଥିଲେ ବି ଓଡ଼ିଆ ସାହିତ୍ୟରେ ଅମର ହୋଇ

ରହିଥାନ୍ତେ । 'ସ୍ମୃତିଚିନ୍ତାମଣି' କେବଳ ଓଡ଼ିଆ ସାହିତ୍ୟ ନୁହେଁ ପୃଥିବୀର ଯେକୌଣସି ସାହିତ୍ୟର କଳେବର ମଣ୍ଡନ କରିବ ଏଥିରେ ସନ୍ଦେହ ନାହିଁ ।

**ବ୍ୟକ୍ତିଚେତନା—**

ବ୍ୟକ୍ତି ଚେତନା ଆଧୁନିକ ସାହିତ୍ୟର ଏକ ବିଶେଷତ୍ୱ । କିନ୍ତୁ ପ୍ରାଚୀନ ସାହିତ୍ୟ ଅସାଧାରଣ ଭାବରେ ନିର୍ବୈ୍ୟକ୍ତିକ ଥିଲା । ଏଥିରେ କବିଙ୍କର ବ୍ୟକ୍ତିଗତ ସୁଖଦୁଃଖକୁ ସ୍ଥାନ ଦିଆଯାଉ ନଥିଲା । କାରଣ ରସ ନିଷ୍ପତ୍ତିର ପରିପନ୍ଥୀ ବୋଲି ବିଚାର କରାଯାଉଥିଲା । ଦୁଃଖ କେବଳ ଦୁଃଖ ସାଧାରଣ ଭାବରେ ହିଁ ଉପଭୋଗ୍ୟ । ସେଥିପାଇଁ ରସକୁ ବ୍ରହ୍ମାସ୍ୱାଦ ସହୋଦର ବୋଲି ବୁଝାଯାଉଥିଲା । କିନ୍ତୁ ବ୍ୟକ୍ତିଚେତନା ପାଠକର ପ୍ରାଣକୁ ସ୍ପର୍ଶ କରେ । ଏହା ପାଠକକୁ ଲେଖକର ନିକଟତର କରିଦିଏ । ଖ୍ରୀମସ୍କୋଇ ତାହାଙ୍କ କାବ୍ୟ କବିତାରେ ନିଜ ବାଲ୍ୟ ଓ କୈଶୋର ଜୀବନର ଦୁଃଖ ଦୁର୍ଦ୍ଦଶାର ଏକ କରୁଣ ଚିତ୍ର ପ୍ରଦାନ କରିଅଛନ୍ତି ।

"ସେ ସମସ୍ତ କଥା ହୃଦେ କରି ଚିନ୍ତା ଜୀବନ ଯାଉଛି ପୋଡ଼ି ।
ପଞ୍ଚଭୂତ ଆତ୍ମା ନିତ୍ୟେ ବାନ୍ଧୁଅଛି ଚଉଁ ଚଇତନ ବୃଡ଼ି ॥
ସେ କଥା ମାନ ଏବେ ମନେପଡ଼ିଲେ ହୃଦସ୍ଥ ହେଉଛି ଯାହା ।
ଦେହ ପୁଲକିତ ହୋଇ ହକ୍ରଣ୍ଟିତ ଚମକ ଉଠୁଛି ହିଆ ॥
(ସ୍ମୃତିଚିନ୍ତାମଣି—୨୯ ବୋଲି)

× × ×

ଶୂନ୍ୟକୁ ଅନାଇ ରହିଅଛି ମୁହିଁ କି ରୂପେ ଧରିବି ଦେଖି ।
କେଉଁ ଡାଳ ଧରି ପାରିହୋଇଯିବି ହାତ ଗୋଡ଼ ପାଉନାହିଁ ॥
ଶ୍ରୀଗୁରୁ ବଚନ ପାଷାଣରେ ଗାର କଲେ ମୁହିଁ ଛିନ୍ନ ଭିନ୍ନ ।
ପ୍ରେମେ ଚର୍ମେ ଭେଦ ଅଷ୍ଟାଙ୍ଗ ଶରୀର ଅସ୍ଥି ମାଂସ ହେବ ଭିନ୍ନ ॥
(ସ୍ମୃତିଚିନ୍ତାମଣି—୨୨ ବୋଲି)

ଏହିପରି ବହୁ ସ୍ଥଳରେ କବି ନିଜ ହୃଦୟର ଦୁଃଖ, ଅର୍ତ୍ତି, ଅନ୍ତର୍ଦ୍ୱନ୍ଦ୍ୱ ଓ ମାନସିକ ସଙ୍କଟର ପରିଚୟ ପ୍ରଦାନ କରିଛନ୍ତି । ଓଡ଼ିଆ ସାହିତ୍ୟରେ ଏ ଧାର ସମ୍ପୂର୍ଣ୍ଣ ନୂତନ । ଏହା ପାଠ କଲାବେଳେ ପାଠକ ଲେଖକ ସହିତ ଏକାକାର ହୋଇଯାଏ । ଏହାଛଡ଼ା ଖ୍ରୀମସ୍କୋଇ ଯେତେବେଳେ ଭଗବନ୍ତ ଭକ୍ତିର କଥା ଅବତାରଣା କରିଛନ୍ତି ସେତେବେଳେ ମଧ୍ୟ ତାର ବୈ୍ୟକ୍ତିକତା ଅନ୍ତରକୁ ନିବିଡ଼ ଭାବରେ ସ୍ପର୍ଶ କରେ । ମନେହୁଏ ଯେତେ ଯେପରି ଭକ୍ତ ଖ୍ରୀମ ଭଗବାନଙ୍କ ସଙ୍ଗେ କଥାବାର୍ତ୍ତା କରୁଛନ୍ତି—

"କରୁଣା କଟାକ୍ଷ କୃପାହିତ ଦୟା ଯାହା ଦେଇ ଅଛୁ ମୋତେ ।
ସେବା ଭକ୍ତି ଗୁଣ କଲନ୍ତିର ଋଣ ଊଣା ହେଲି କେତେ କେତେ ॥

ପାବୁପରାୟନ୍ତେ ଖଟୁଅଛୁ ମୁହିଁ ଯେଜୁକୁ କ ନାହିଁ ଭୂହ ।
ଜନମଯାକ ମୋ ବହିଗଲଣି ତ ଗହଣୀରେ ମାପି ଦେଇ ॥"

(ସ୍ତୁତିଚିନ୍ତାମଣି—୪୬ ବୋଲି)

ଭୀମଭୋଇଙ୍କ ବାସ୍ତବ ଜୀବନର ଜ୍ୱଳନ୍ତ ସ୍ପର୍ଶ ତାଙ୍କର କବିତାଚୟକୁ ଅନବଦ୍ୟ ସୁଷମାରେ ମଣ୍ଡିତ କରିଅଛି । ପରବର୍ତ୍ତୀ କାଳରେ ରାଧାନାଥ ଓ ମାୟାଧର ମାନସିଂହଙ୍କ କବିତାବଳୀରେ ଏଧାରାର ସମଧିକ ବିକାଶ ଲକ୍ଷ୍ୟ କରୁ ।

ଏହା ଦ୍ୱାରା ଭୀମଭୋଇ ଯେ ଓଡ଼ିଆ ସାହିତ୍ୟରେ ଏକ ନବଦିଗନ୍ତ ସୃଷ୍ଟି କରିଛନ୍ତି ଏଥିରେ ସନ୍ଦେହ ନାହିଁ ।

**ସମାଜଚେତନା—**

ସମାଜ ସଚେତନତା ହେଉଛି ସାହିତ୍ୟର ପ୍ରାଣ ବିନ୍ଦୁ । କାରଣ ସାହିତ୍ୟ ହେଉଛି ସମାଜର ନଖଦର୍ପଣ, ସମାଜ ପାଇଁ ସାହିତ୍ୟର ସୃଷ୍ଟି । ସାରଳା ସାହିତ୍ୟ ଏବଂ ପଞ୍ଚସଖା ସାହିତ୍ୟରେ ଏହାର କ୍ଷୀଣ ଆଭାସ ଦେଖିବାକୁ ମିଳେ । କିନ୍ତୁ ଭଞ୍ଜଯୁଗରେ ସାହିତ୍ୟ ସମାଜଠାରୁ ଦୂରେଇଗଲା । ଏଥିରେ ସାହିତ୍ୟ ସମାଜର ନିଛକ ପ୍ରତିକୃତି ନ ହୋଇ କବିକଳ୍ପନାର ମାୟାପୁରୀରେ ପରିଣତ ହେଲା । ଏହାର ପ୍ରଧାନ ଆକର୍ଷଣ ହେଲା ନାୟକ ନାୟିକାଙ୍କର ପୂର୍ବରାଗ, ମିଳନ, ବିଚ୍ଛେଦ, ପୁନର୍ମିଳନ, ଭ୍ରମ, ସ୍ୱେଦ, ଅଶ୍ରୁ, ମୂର୍ଚ୍ଛା, ପ୍ରଳୟ, ଦନ୍ତକ୍ଷତ ଆଉ ଚୁମ୍ବନ । ପରାଧୀନତାର ଯୁଗଯନ୍ତ୍ରଣାରୁ ରକ୍ଷା ପାଇବା ପାଇଁ ଏହା ଥିଲା ଏକ ମରୁଦ୍ୱୀପ । ତହିଁରେ ପୁଣି ଅନ୍ତଲିପି, ବହିର୍ଲିପି, ସର୍ବଯମକ, ମହାଯମକର ଗୋଲକଧନ୍ଦା ମଧ୍ୟରେ ପାଠକ ଅହନିଶ୍ୱାସୀ ହୋଇପଡ଼ୁଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ସୁଦ୍ଧା ଏହାହିଁ ଥିଲା ଓଡ଼ିଆ ସାହିତ୍ୟର ପରମ୍ପରା ।

ଭୀମଭୋଇ ଏହି ପରମ୍ପରାର ଏକ ବ୍ୟତିକ୍ରମ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଥିଲେ ଜଣେ ମାଟିର ମଣିଷ । ଏକ ଦରିଦ୍ର କନ୍ଧ ପରିବାରରେ ହୋଇଥିଲା ତାଙ୍କର ଜନ୍ମ । ତାଙ୍କର ବାଲ୍ୟ ଓ କୈଶୋର ଜୀବନ ବହୁ ଦୁଃଖ କଷ୍ଟ ଓ ଝଡ଼ଝଞ୍ଜା ମଧ୍ୟରେ ଅତିକ୍ରାନ୍ତ ହୋଇଥିଲା । ମହିମା ଧର୍ମ ଗ୍ରହଣ ଓ ମହିମା ଧର୍ମ ପ୍ରଚାରରେ ବ୍ରତୀ ହେବା ପରେ ସେ ସମାଜର ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଈର୍ଷା, ଅସୂୟା, ଅନ୍ୟାୟ, ଅତ୍ୟାଚାର, ନିର୍ଯ୍ୟାତନା ଓ ହାସ ପରିହାସର ପାତ୍ର ହୋଇଥିଲେ । ସମାଜର ବାଦ, ଛିଦ୍ର, ଅହଙ୍କାର, କପଟତା, ଛଳନା, ହିଂସା, ପରଶ୍ରୀକାତରତା, ଅସହିଷ୍ଣୁତା ତାଙ୍କୁ ଅଧୀର କରିପକାଇଥିଲା । ତେଣୁ ସେ ଏହି ସମାଜର ଧ୍ୱଂସସ୍ତୂପ ଉପରେ ସତ୍ୟ, ସମତା, ଐକ୍ୟ ଓ ଅହିଂସା ଉପରେ ପ୍ରତିଷ୍ଠିତ ଏକ ନୂତନ ସମାଜ ଗଢ଼ିବାକୁ ଚାହିଁଥିଲେ । ତାହାଙ୍କ ରଚିତ କାବ୍ୟ କବିତା ପାଠ କଲାବେଳେ ଏହି ସମାଜ ସଚେତନତା ଆମର ପ୍ରାଣକୁ ସ୍ପର୍ଶ କରେ ।

ପଞ୍ଚଭୂତ ଆତ୍ମା ଦଗ୍ଧ ହେଉଛି ଜୀବନ କାନ୍ଦୁଛି ଜଡ ।
ଅନ୍ୟାୟ ସଂସାର ଅନାଥ ଆତୁର ଦେଖି କଲ ଯୁଗ ଗାଢ ॥

ଅନୁମାନ କରୁଅଛୁ ଅନ୍ତର୍ଗତେ ସାଧୁ ହୋଇ ନାହିଁ କେହି ।
କଳି ଯୁଗେ ଆଣି ମେଳଛଙ୍କ ସଙ୍ଗେ ଜାତ କଲେ କାହିଁପାଇଁ ॥
ଧାର୍ମିକ ନାସ୍ତିକ କପଟୀ ଲମ୍ପଟୀ ଖଚୁଆ ମିଛୁଆ ଲୋକେ ।
ହାବୁଡ଼େ ପଡ଼ିବେ ଖଡ଼ଗେ ଛିଡ଼ିବେ କାଳ ବିକାଳଙ୍କ ମୁଖେ ॥
କାମୀ କ୍ରୋଧୀ ଲୋଭୀ ବଇଶ ଏ ଜନ ସକଳେ ଏ ଯିବେ ହତ ।
ଲୁଚି ପଳାଇଲେ ଧରି ଗିଳୁଥିବ ଅକାଳ ବାବନାଭୂତ ॥
ହିଂସା ଅହଙ୍କାର ଥେଣ୍ଟାଖଣ୍ଟ ବୈର ଜଗତେ ଅଛନ୍ତି ଯେତେ ।
ଖଗରେ ଛିଡ଼ିବେ ଖଡ଼ଗେ ଚଣ୍ଡୀ ଚାମୁଣ୍ଡାଙ୍କ ହସ୍ତେ ॥

ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ଏ ସମାଜଚେତନା ଅନୁପମ ଓ ଅଦ୍ୱିତୀୟ । ପରବର୍ତ୍ତୀ କାଳରେ ବ୍ୟାସକବି ଫକୀରମୋହନ ତାହାଙ୍କ ଗଳ୍ପ ଉପନ୍ୟାସମାନଙ୍କରେ ଏହାକୁ ସମ୍ୟକ୍ ଭାବରେ ରୂପାୟିତ କରିଥିଲେ ।

**ଧାର୍ମିକ ଚେତନା—**

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସମାଜର ନୈତିକ ମୂଲ୍ୟବୋଧରେ ଯେ କେବଳ ଅଧୋଗତି ଘଟିଥିଲା ତାହା ନୁହେଁ, ଧର୍ମ ଜଗତରେ ମଧ୍ୟ ନାନା ବିଭ୍ରାଟ ଦେଖା ଦେଇଥିଲା । ଲୋକେ ବେଦବେଦାନ୍ତର ସାରମର୍ମ ବିସ୍ମୃତ ହୋଇ ପ୍ରତିମା ପୂଜା, ବାହ୍ୟ କ୍ରିୟାକର୍ମ ଓ ଆଡ଼ମ୍ବର ଅନୁଷ୍ଠାନ ଉପରେ ଅଧିକ ଗୁରୁତ୍ୱ ଆରୋପ କରୁଥିଲେ । ଏହା ଫଳରେ ଧର୍ମର ମୂଳସ୍ରୋତରୁ ସେମାନେ ବିଚ୍ଛିନ୍ନ ହୋଇ ଯାଇଥିଲେ । ଏହାଛଡ଼ା ପାଶ୍ଚାତ୍ୟ ଚିନ୍ତାଧାରା ପ୍ରବର୍ତ୍ତନ ଫଳରେ ଧର୍ମର ବନ୍ଧନ ଶିଥିଳ ହୋଇଯାଇଥିଲା ଏବଂ ଲୋକେ ଭୌତିକ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଅଧିକ ଆକୃଷ୍ଟ ହୋଇଥିଲେ । ଏହା ଫଳରେ ସମାଜରେ ନାନା ଭ୍ରଷ୍ଟାଚାର ଓ ନୀତିହୀନତା ଦେଖାଦେଇଥିଲା । ଭୌତିକତାର ଉପାସନା ଫଳରେ ଏକପ୍ରକାର ନାସ୍ତିକତା ସମାଜକୁ ଗ୍ରାସ କରିବାକୁ ବସିଥିଲା । ସମାଜର ଏହି ଧର୍ମ ସଙ୍କଟ ଭକ୍ତ ଭୀମଭୋଇଙ୍କ ହୃଦୟକୁ ଚହଲାଇ ଦେଇଥିଲେ, ଏବଂ ସେ ସତ୍ୟ, ଅହିଂସା ଓ ସମତାର ଭିତ୍ତି ଉପରେ ଆଧାରିତ ସତ୍ୟ ଧର୍ମ ଗ୍ରହଣ କରି ମୁକ୍ତିର ପଥ ସୁଗମ କରିବା ପାଇଁ ସମାଜକୁ ଆହ୍ୱାନ ଦେଉଥିଲେ ।

"ଚଉଦପୁରଯାକ ଅସତ୍ୟ ହେଲାଣି ଧର୍ମଯାଉଅଛୁ ଛାଡ଼ି ।
ବେଳକୁବେଳ ଅପ୍ରମାଣ ହେଉଛୁ ପଡ଼ୁଅଛୁ କାଳ ଧାଡ଼ି ॥
ନାନା ରୂପ ଧରି ମହାଘୋର କାଳ ବ୍ରହ୍ମାଣ୍ଡ ଭିତରେ ପଶି ।
ଛପନ କୋଟି ହୃଦୟରେ ଘାଣ୍ଟୁଛି ହୋଇ କାଳ ଦଣ୍ଡଫାଶି ॥

(ସ୍ତୁ. ଚ.—୪୬ ବୋଲି)

କି ଅବା ସ୍ତ୍ରୀ କି ଅବା ପୁରୁଷ ସର୍ବଜନ ଏକାକାର ।
ପାତକ ପୁଣ୍ୟ ଆପଣା ମହତ୍ତ୍ୱକୁ କାହାର ନାହିଁ ବିଚାର ॥

ଯତି ସତୀ କେହି ନାହାନ୍ତି ଜଗତରେ ସର୍ବେ ବିଟପୀ ବିଟପ ।
ଧର୍ମ ଚିନ୍ତା ପ୍ରାଣୀ କାହିଁ ମୁଁ ରହିବି ସବୁ ଘୋଟିଲାଣି ପାପ ॥
କଳି ପୁରୁଷର ଲୋକ ସର୍ବସ୍ଥାନେ ନାହିଁଟି ସତ୍ୟର ଲୋକ ।
ଧର୍ମ ଧାରଣେ କାହାର ଶ୍ରୋତାନାହିଁ ସର୍ବଜନେ ଅବିବେକ ॥
କଳି ପ୍ରାପ୍ତି କରି ପାତକ ପୁଣ୍ୟକୁ ପଥକରି ହେଲେ ପାର ।
ମୂର୍ଖ ପଣରେ ସାହାସ କରିଛନ୍ତି କେମନ୍ତେ ହେବେ ଉଦ୍ଧାର ॥

(ସ୍ତୁତିଚିନ୍ତାମଣି—୫୫ ବୋଲି)

ସମସାମୟିକ ସମାଜରେ ଧାର୍ମିକ ଚେତନା ସୃଷ୍ଟି କରିବାରେ ଭୀମଭୋଇଙ୍କର ଦାନ ଅତୁଳନୀୟ । ପରବର୍ତ୍ତୀ କାଳରେ ଭୀମଭୋଇଙ୍କ ସଙ୍ଗେ କଣ୍ଠ ମିଳାଇ କବିବର ରାଧାନାଥ ଗାଇଥିଲେ "ଧର୍ମ ଏକା ଯିନା ମହତପଣିଆ, ଆଉ ସବୁ କଥା ଅହେଇଦହଣିଆ ।"

**କାଳଚେତନା—**

କାଳଚେତନା ବା ଯୁଗଯନ୍ତ୍ରଣା ଭୀମଭୋଇଙ୍କ ରଚନାର ଅନ୍ୟ ଏକ ବିଶେଷତ୍ୱ । ସମୟ ଆସେ ଯେତେବେଳେ ସମାଜରେ ନୈତିକ, ଧାର୍ମିକ ଓ ଆଧ୍ୟାତ୍ମିକ ଅଧୋଗତି ଏପରି ସର୍ବବ୍ୟାପକ ଏବଂ ସାର୍ବଜନୀନ ହୋଇପଡ଼େ ଯେ ସେଥିପାଇଁ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ବା ଶ୍ରେଣୀକୁ ଦାୟୀ କରି ଦଣ୍ଡବିଧାନ କରିବା ସମ୍ଭବପର ହୁଏନାହିଁ । ଏହାକୁ ଯୁଗଯନ୍ତ୍ରଣା ବୋଲି କୁହାଯାଏ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଇଉରୋପରେ ଏହିପରି ଏକ ପରିସ୍ଥିତି ଦେଖାଦେଇଥିଲା । ଏକ ଚରମ ଈଶ୍ୱର ସତ୍ତାରେ ବିଶ୍ୱାସ ହରାଇବା ଲୋକମାନଙ୍କ ମଧ୍ୟରେ ଘୋର ହତାଶା ଏବଂ ଆତ୍ମବିଶ୍ୱାସର ଅଭାବ ଦେଖାଦେଇଥିଲା । ମହାକବି ଇଲିଅଟ ଏହାର ସମ୍ୟକ୍ ଆଲୋଚନା ତାଙ୍କର "Waste Land" ନାମକ କାବ୍ୟରେ କରିଅଛନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କ ତିରୋଧାନ ପରେ ଭାରତରେ ଏହିପରି ଏକ ପରିସ୍ଥିତି ଦେଖାଦେଇଥିଲା । ପୁରାଣମାନଙ୍କରେ ଏହାକୁ କଳିଯୁଗ ଆଖ୍ୟା ପ୍ରଦାନ କରାଯାଇଛି । ଶ୍ରୀମଦ୍ ଭାଗବତରେ କଳିର ପ୍ରାଦୁର୍ଭାବ ଫଳରେ ଲୋକମାନଙ୍କର ନୈତିକ, ବୌଦ୍ଧିକ ଓ ଆଧ୍ୟାତ୍ମିକ ଜୀବନରେ ଯେଉଁ ଅଧୋଗତି ଦେଖାଦେବ ତାର ପ୍ରତିକାର ବିଧାନ ପାଇଁ ଭାଗବତଧର୍ମର ଅନୁସରଣ କରିବା ପାଇଁ ଉପଦେଶ ଦିଆଯାଇଛି । ଅଚ୍ୟୁତାନନ୍ଦଙ୍କ ଆଗତ ଭବିଷ୍ୟତ ମାଳିକାମାନଙ୍କରେ କଳିର ପ୍ରାଦୁର୍ଭାବ ଫଳରେ ଲୋକମାନଙ୍କର ସାମାଜିକ, ନୈତିକ ଓ ଆଧ୍ୟାତ୍ମିକ ଜୀବନରେ ଯେଉଁ ବିପର୍ଯ୍ୟୟ ଦେଖାଦେବ ତାର ଏକ ଭୟାବହ ଚିତ୍ର ଅଙ୍କନ କରାଯାଇଛି । କଳିଯୁଗର ବହୁଳ ବର୍ଣ୍ଣନା ଭୀମଭୋଇଙ୍କ ରଚନା ସମୂହରେ ଦେଖିବାକୁ ମିଳେ । ଏହା ତାହାଙ୍କ ରଚନା ସମୂହର ମଧ୍ୟବିନ୍ଦୁ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଭୀମଭୋଇଙ୍କ ମତରେ ସମସାମୟିକ ସାମାଜିକ ଜୀବନରେ ଯେଉଁ ନୈତିକ, ଧାର୍ମିକ ଓ ଆଧ୍ୟାତ୍ମିକ ଅଧୋଗତି ଦେଖାଦେଇଥିଲା ତାର ମୂଳକାରଣ କଳିର ପ୍ରାଦୁର୍ଭାବ । ଏହି ଅଧୋଗତି ଏପରି ସର୍ବବ୍ୟାପକ ଏବଂ ସାର୍ବଜନୀନ ହୋଇଯାଇଥିଲା

ଯେ ସେ ଏହାକୁ କଳିଯୁଗର ପ୍ରସ୍ତାବ ବୋଲି ବର୍ଣ୍ଣନା କରିଛନ୍ତି ଏବଂ ସତ୍ୟ ମହିମାଧର୍ମର ଆଶ୍ରୟ ଗ୍ରହଣ ଏହାର ଏକମାତ୍ର ପ୍ରତିକାର ବୋଲି ନିର୍ଦ୍ଦେଶ କରିଛନ୍ତି ।

**ବିଶ୍ୱଚେତନା—**

ଭୀମଭୋଇ କେବଳ ବ୍ରହ୍ମବାଦୀ ନଥିଲେ—ସେ ଜଗତର ସକଳ ପ୍ରାଣୀଙ୍କଠାରେ ପରଂବ୍ରହ୍ମଙ୍କୁ ଦର୍ଶନ କରୁଥିଲେ ।

"କିବା ଦୃଷ୍ଟ ସନ୍ଥ ସେବକ ସାମନ୍ତ କୀଟ ପତଙ୍ଗରେ ପୂରି ।
ତୁମ୍ଭେ ପୂରିଅଛ କାହିଁ ଊଣାନାହିଁ ସର୍ବଘଟେ ସମସରି ॥
ତିପୁର ଜଗତେ ଜୀବଛନ୍ତି ଯେତେ ଅଛୁ ନାମ କଳାଚନ୍ଦ୍ର ।
ସମ ସେ ଶଙ୍କୁଳି ଏକ ଆତ୍ମା ବୋଲି ନ କର ହୋ ଭିନ୍ନାଭିନ୍ନ ॥"

ତେଣୁ ଭୀମଭୋଇ ଜାତିଧର୍ମବର୍ଣ୍ଣ ନିର୍ବିଶେଷରେ ଜଗତର ସକଳ ପ୍ରାଣୀଙ୍କ ସୁଖଦୁଃଖ ସହିତ ଆପଣାକୁ ସାମିଲ କରିଦେଇଥିଲେ । ଜଗତର ଲୋକମାନଙ୍କ ନୈତିକ ଅଧୋଗତିରେ ତାଙ୍କ ପ୍ରାଣ କାନ୍ଦିଉଠୁଥିଲା ଏବଂ ନିଜର ପ୍ରାଣ ବିନିମୟରେ ସେ ସେମାନଙ୍କର ଦୁଃଖ ହରଣ ପାଇଁ ଉଦ୍ୟମ କରୁଥିଲେ । ଜଗତର ଲୋକମାନଙ୍କର ଦୁଃଖରେ ଆତ୍ମହରା ହୋଇ ସେ ଗାଇଉଠିଛନ୍ତି—

ଏକ ଖଣ୍ଡ ହାଡ଼ ଗୁନ୍ଥାଏ ରୁଧିର ଫୁଟେ ମାଉଁସ କାଣଇ ।
ତେଣୁକରି ସିନା ପ୍ରାଣୀଙ୍କ ବିକଳ ସହି ନ ପାରଇ ମୁହିଁ ॥

ପ୍ରାଣୀମାନଙ୍କର କଲ୍ୟାଣ ପାଇଁ ସେ ନର୍କକୁ ଯିବାକୁ ଓ ଜୀବନପାତ କରିବାକୁ ମଧ୍ୟ ପ୍ରସ୍ତୁତ ।

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଜାଣି ଜାଣି କେବା ସହୁ ।
ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ॥

× × ×

ଆତ୍ମା ଭରତରେ ଦୋଷାଦୋଷ ଥିଲେ ବଜ୍ରପଡ଼ୁ ମୋ ମୁଣ୍ଡକୁ ।
ଭଣେ ଭୀମଭୋଇ ଅଭିଶାପ ଦେଇ କାଳିନ୍ଦୀ ମୋ ପିଣ୍ଡକୁ ॥

ଏହି ଭକ୍ତଙ୍କ ମାନବବାଦ ଓ ଅଖଣ୍ଡ ବିଶ୍ୱଚେତନାର ସ୍ୱର ଓଡ଼ିଆ ସାହିତ୍ୟରେ ନୂତନ—ଏହା ଯେ କୌଣସି ବ୍ୟକ୍ତି ସ୍ୱୀକାର କରିବ ।

**ଦେଶାତ୍ମବୋଧ ଓ ବୈପ୍ଳବିକ ଦୃଷ୍ଟିଭଙ୍ଗୀ—**

ଭୀମଭୋଇଙ୍କର ରଚନା ସମୂହରେ ତାହାଙ୍କର ଗଭୀର ଦେଶାତ୍ମବୋଧର ପରିଚୟ ମିଳେ । ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷର ତାଣ୍ଡବ ଲୀଳା ତାଙ୍କ ପ୍ରାଣକୁ ଗଭୀର ଭାବରେ ଆଲୋଡ଼ିତ କରିଥିଲା ଏବଂ ସେ ଅନ୍ନବସ୍ତ୍ର ଦାନକରି ପ୍ରାଣୀମାନଙ୍କୁ ମୃତ୍ୟୁ ମୁଖରୁ ବଞ୍ଚାଇବା ପାଇଁ ଲୋକମାନଙ୍କୁ କାତର ନିବେଦନ କରିଥିଲେ । ଅଗତ ଭବିଷ୍ୟତ କଥନ ଛଳରେ ସେ ଇଂରେଜମାନଙ୍କର ଓଡ଼ିଶା ଆକ୍ରମଣ ଓ ସିପାହୀ ବିଦ୍ରୋହର ଯେଉଁ ଭୟାବହ ଚିତ୍ର

ପ୍ରଦାନ କରିଛନ୍ତି ତହିଁରୁ ତାଙ୍କ ଦେଶାତ୍ମବୋଧର ପରିଚୟ ମିଳେ । ଭାରତର ଦାସତ୍ୱ ଓ ପରାଧୀନତା ତାଙ୍କ ପ୍ରାଣକୁ ଅଧୀର କରିପକାଉଥିଲା । ସେ ଆଶା ପୋଷଣ କରିଥିଲେ ଯେ ଇଂରେଜମାନେ କଦାପି ଭାରତକୁ ଚିରଦିନ ପାଇଁ ଦାସତ୍ୱ ବନ୍ଧନରେ ବାନ୍ଧିରଖି ପାରିବେ ନାହିଁ । ଭାରତ ଅବଶ୍ୟ ମୁକ୍ତ ହେବ ଏବଂ ଇଂରେଜମାନେ ସ୍ୱଦେଶକୁ ଲେଉଟି ଯିବେ । ସେଥିପାଇଁ ସେ ଆଗତ ଭବିଷ୍ୟତ ଉକ୍ତ ଛନ୍ଦରେ ସ୍ୱାଧୀନତାର ଆଦ୍ୟ ଆଗମନୀ ଶୁଣାଇ କହିଛନ୍ତି—ଯୁଝିବ ଫିରିଙ୍ଗୀ ଭାଙ୍ଗି ନ ପାରିବ ରହିବ ତା ନିଜ ସ୍ଥାନେ ।

ଭୀମଭୋଇ ସମସାମୟିକ ସ୍ଥିତାବସ୍ଥାକୁ ସ୍ୱୀକାର କରୁନଥିଲେ । ସେ ସତ୍ୟ ଅହିଂସା ଓ ସମତା ଭିତ୍ତିରେ ଏକ ନୂତନ ସମାଜର ଅଭ୍ୟୁଦୟ ପାଇଁ ଆହ୍ୱାନ ଦେଇଛନ୍ତି ଏଥିରୁ ତାଙ୍କ ବୈପ୍ଳବିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳେ ।

"ନବଖଣ୍ଡ ମହୀ ଥାଳ ପ୍ରାୟ ହୋଇ ହେଜିଲେ ମନକୁ ଆସେ
ଏ ମୋର ନେତ୍ରକୁ ଛପନ କୋଟି ଜୀବ ଚରଣ ପରାଏ ଦିଶେ ॥
ଏକା ଦିବସରେ କ୍ଷଣକ ଭିତରେ ଦ୍ୟନ୍ତ ପୃଥ୍ୱୀ ଲେଉଟାଇ ।
ତାନ୍ତ କାମୁଡ଼ି କସ ବୁଦ୍ଧି କରିବ ଶ୍ରୀ ଗୁରୁଙ୍କ ଆଜ୍ଞା ନାହିଁ ॥

(ସ୍ତୁ. ଚି.—୨୭ ବୋଲି)

ପରବର୍ତ୍ତୀ ସମୟରେ ରାଧାନାଥ ମହାଯାତ୍ରା କାବ୍ୟରେ ଅମର୍ତ୍ତ୍ୟ ବାଣୀ ଛଳରେ ବିପ୍ଳବ ପାଇଁ ଆହ୍ୱାନ ଦେଇଛନ୍ତି । ଭୀମଭୋଇଙ୍କ ପରି ସେ ମଧ୍ୟ କଳି ପୁରୁଷର ଅବତାରଣା କରିଛନ୍ତି । ଭୀମଭୋଇ ଓଡ଼ିଆ ସାହିତ୍ୟରେ ପ୍ରାଚୀନ ଓ ନବୀନ ମଧ୍ୟରେ ଥିଲେ ଏକ ବନ୍ଧନ ସେତୁ । ତାଙ୍କ କାବ୍ୟ କବିତାର ପରିଚ୍ଛଦ କେତେକ ଦୃଷ୍ଟିରୁ ପ୍ରାଚୀନ ଥିଲେ ହେଁ ତାର ପ୍ରାଣଧର୍ମ ଥିଲା ଆଧୁନିକ । ଏହାହିଁ ବୋଧହୁଏ ଥିଲା ଓଡ଼ିଆ ସାହିତ୍ୟକୁ ତାଙ୍କର ସର୍ବଶ୍ରେଷ୍ଠ ଅବଦାନ ।

ଭୀମଭୋଇ ଅକ୍ଷର ଗଣି ପଦବସାଇବା ଭଳି କସରତିଆ କବି ନ ଥିଲେ । କବିତ୍ୱ ଥିଲା ତାଙ୍କର ସହଜାତଧର୍ମ । ସେ ଏକ ସମୟରେ ଏକ ସ୍ୱରରେ ସ୍ୱରେଷ୍ଟି ଲେଖାଏଁ ଭଜନ ରଚନା କରୁଥିବା କଥା ସ୍ତୁତି ଚିନ୍ତାମଣି ଓ ଅନ୍ୟ କେତେକ ଭଜନରେ ବ୍ୟକ୍ତ କରିଅଛନ୍ତି ।

ବୃଦ୍ଧିକେ ସ୍ୱରଶୋଟି ଲେଖେ ଭଜନା ହରୁଷିଲି କରି ଭାଗ ।
ଯେନଯେନ ବୋଲି ସକଳ ଜନ୍ତୁଙ୍କ ବାଣ୍ଟିଦେଇ ସ୍ୱରଭାଗ ॥

( ସ୍ତୁ.ଚି.—୭୯ ବୋଲି )

ଗଙ୍ଗୋତ୍ରୀରୁ ଜାହ୍ନବୀ ପ୍ରବାହ ଅବାରିତ ଗତିରେ ନିର୍ଗତ ହେବାପରି କବିତା ତାଙ୍କ ଅନ୍ତରରୁ ସ୍ୱତଃସ୍ଫୂର୍ତ୍ତି ଭାବରେ କ୍ଷରିତ ହେଉଥିଲା ।

"ସାର ଅସାର ବୁଝାଇ ପରକାର ବାଖ୍ୟାନରେ ପଦ ବସୁ ।
ବରଷା କାଳରେ ମହାନଦୀ ପ୍ରାୟ ପଦ ଅର୍ଥ ବଢ଼ି ଆସୁ ॥"

କବିଙ୍କର ଏହି ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ । ସେ ଯେ କବି କୁଳର ଚନ୍ଦ୍ର ସ୍ୱରୂପ ଥିଲେ ଏଥିରେ ଟିକେ ମାତ୍ର ଦ୍ୱିଧା ନାହିଁ । ଖ୍ରୀମସ୍ତେଇଙ୍କର କାବ୍ୟ କବିତା ଯେପରି ସରଳ ସେହିପରି ହୃଦୟସ୍ପର୍ଶୀ । ଏଥିରେ କବି କଳ୍ପନାର ସ୍ୱଚ୍ଛତା କିମ୍ବା ଅଳଙ୍କରଣର ପ୍ରସ୍ତାବ ନାହିଁ । ହେଲେହେଁ ଏହା ଭକ୍ତକବି ମଧୁସୂଦନଙ୍କ ଲେଖାରେ ଅମଣ୍ଡନା ହୋଇ ମଧ୍ୟ ମନୋଜ୍ଞମଣ୍ଡନା । ଏଥିରେ ଅନୁପ୍ରାସ, ଉପମା, ରୂପକ ଓ ଉତ୍ପ୍ରେକ୍ଷା ଆଦି ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ସ୍ୱତଃସ୍ଫୁର୍ତ୍ତି ଭାବରେ ଆତ୍ମପ୍ରକାଶ କରିଅଛି ।

**ଅନୁପ୍ରାସ—**

ଭୁତାଶ୍ରମ ହୋଇ ଭିତରେ ପଶିଛି ଭୁତ ପ୍ରାପ୍ତ ବୁଦ୍ଧି କରି ।
ସତ୍ୟବନ୍ତ ପ୍ରଭୁ ସଂସାରରେ ଆଇ ସାକ୍ଷାତରେ ଦିବ ସରି ।।
ଛବକ ଦେଖି ଛନକାରେ ପଡ଼ିଚ ଛଟପଟ ହେଉଅଛୁ ।
ମାସ୍ତାଧର ପ୍ରଭୁ ମହତ୍ତ୍ୱ ରଖାଅ ମର୍ଯ୍ୟାଦା ସରିଯାଉଛୁ ।।

ଖ୍ରୀମସ୍ତେଇଙ୍କ ରଚନାରେ ଅନୁପ୍ରାସର ଏପରି ମଧୁର ସମାବେଶ ସର୍ବତ୍ର ଦେଖିବାକୁ ମିଳେ ।

ଖ୍ରୀମସ୍ତେଇଙ୍କ ଉପମା ଅଳଙ୍କାରର ପ୍ରୟୋଗ ପ୍ରାଣକୁ ସ୍ପର୍ଶକରେ, କାରଣ ଏଗୁଡ଼ିକ ତାଙ୍କର ବାସ୍ତବ ଅନୁଭୂତିରୁ ଗୃହୀତ ।

ଅପ୍ରମସ୍ତେ ନଦୀ ପେଣ୍ଡିପେଣ୍ଡି ବନ୍ଧା ତନୁ ତନୁ ମହାଭାର ।
ନଦୀକୁ କାନ୍ଧରେ ବହିଥିବ କେତେ ଯାଉଁଛି ମୃତ୍ୟୁର ଘର ।।
ଧର୍ମ ହୁଦେ ତନୁ ଏ ମାନବ ତନୁ ବହିଗଲ କେତେ ଦିନ ।
ନଦକୁ ବସ୍ତ୍ର ପ୍ରାସ୍ତୁକର କେତେ ପିନ୍ଧିବ କଟିରେ କରି ଭୂଷଣ ।।
ହାସ୍ୟ ଭର୍ତ୍ସନା ଗାଳି ଗର୍ବ ହିଂସାକୁ ଗଳାରେ ପିନ୍ଧିବ ମାଳ ।
ଟାଳି ଟାଳି ମୁହିଁ ଆଗତକୁ ସୃହିଁ ବହିଯାଉଅଛୁ କାଳ । (ସ୍ତୁ. ଚି.—୭୨ ବୋଲି)

ସ୍ଥଳବିଶେଷରେ ଖ୍ରୀମସ୍ତେଇଙ୍କ ମାଳୋପମାର ବ୍ୟବହାର ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଓ ହୃଦୟଗ୍ରାହୀ ହୋଇଅଛି ।

ରଜକ ଯେସନ ମଳିଆ ଉଜ୍ଜ୍ୱଳ କରଇ ଲୁଗେ ।
ସେ ରୂପେ ମୋତେ ଉଜ୍ଜ୍ୱଳ କର ପ୍ରଭୁ ଯେଉଁ ପାପ ଅଛି ଘଟେ ।।
ସୁବର୍ଣ୍ଣ ଯେସନେ ଅନଳେ ଦହିଲେ ରୂପ ତା ଦିଶଇ ଝଳି ।
ତେସନେ ମୋତେ ବ୍ରହ୍ମ ଅନଳେ କାଳ ଗୁଡ଼ିଯାଉ ପାପ ମଳି ।।
ଯେସନେ ଜଳରେ ପଶିଲେ ସ୍ନାନ କଲେ ଶୁଦ୍ଧ ହୋଇ ।
ପଙ୍କ ଧୂଳି ମଳି ଅଙ୍ଗେ ଲାଗିଥିଲେ ତତକ୍ଷଣେ ଛୁଡ଼ିଯାଇ ।।

ସେହିପରି ମୋର ଅଙ୍ଗେ ଲାଗିଅଛି ପାପ ପଙ୍କ ମଳ ଦେଖ ।
ଶୂନ୍ୟ ପୁରୁଷ ଏ ଶରୀରୁ ଉହ୍ଲାଇ କୋଠ ଭଣ୍ଡାରରେ ରଖ ।।
ଆକାଶେ ଯେସନେ ଘନ ଘୋଟିଥାଇ ଦିଶେ ଅନ୍ଧାର କୁହୁଡ଼ି ।
ଜଳ ବୃଷ୍ଟି ହେଲେ କାମରୂପୀ ସ୍ୱଭେ ବାତଘାତେ ଯାଏ ଉଡ଼ି ।।
ପାପ ମିଛ କଳା ଘୋଟିଅଛି ଅଙ୍ଗେ ସର୍ବାଙ୍ଗେ ଅନ୍ଧାର ହୋଇ ।
ଶୂନ୍ୟପୁରୁଷ ମୋତେ ଉଜ୍ଜ୍ୱଳ କର ଅମୃତ ଲୋଚନେ ଚାହିଁ ।।
(ସ୍ତୁ.ଚି.—୭୫ ବୋଲି)

ଉପମା ଅଳଙ୍କାରର ଏ ସାର୍ଥକ ପ୍ରୟୋଗ ଭୀମଭୋଇଙ୍କ ରଚନାବଳୀକୁ ଅଧିକ କମନୀୟ କରିଅଛି । ଆଧ୍ୟାତ୍ମିକ ଅମୂର୍ତ୍ତିଭାବ ସମୂହର ବ୍ୟାଖ୍ୟା ପାଇଁ କବି ସ୍ଥଳବିଶେଷରେ ବିପରୀତାର୍ଥବୋଧକ ପଦ ଯୋଜନା ଓ ବିରୋଧାଭାସର ଆଶ୍ରୟ ନେଇଅଛନ୍ତି ।

ଗୁରୁଦେବ ସ୍ୱାମୀ ନିଷ୍କାମ ପୁରୁଷ ମୁହିଁ ଅଟଇ ସକାମ ।
ଗୁରୁଦେବ ସ୍ୱାମୀ ନିର୍ଗୁଣ ପୁରୁଷ ମୁହିଁ ଅଟଇ ସଗୁଣ ।।
ଏତେବେଳେ ମୋତେ ପଥ କହିଦିଅ ପଶିଯାଉଅଛି ବନ ।
ମାୟା ପ୍ରବଳରୁ ବଞ୍ଚାଇଣ ରଖ ତାରିନିଅ ଦେଇ ନାମ ।।
ଗୁରୁଦେବ ସ୍ୱାମୀ ନିର୍ବେଦ ପୁରୁଷ ମୋର ତନୁ ଅଟେ ବେଦ ।
ପାପ ପ୍ରକୃତ ପିଣ୍ଡରୁ ଉଦ୍ଧରିବ କହି ବ୍ରହ୍ମଜ୍ଞାନ ଭେଦ ।। (ସ୍ତୁ.ଚି.—୮୫ ବୋଲି)

ଏଠାରେ ସକାମ ନିଷ୍କାମାଦି ବିପରୀତାର୍ଥବୋଧକ ପଦ ଯୋଜନା କାବ୍ୟର ମନୋହାରିତାକୁ ବୃଦ୍ଧି କରିବାରେ ସହାୟକ ହୋଇଅଛି ।

"ଆପଣେ ଗୁଳଇ ପଥ ଆପେ ଥାଏ ବସି ।
ଆପଣେ ବିରସ ମନ ଆପେ ଦଏ ହସି ।।
ଆପଣା ଇଚ୍ଛାରେ ବଡ଼ ଆପେ ହୋଏ ସାନ ।
ଆପେ ସାଧୁତ ପଣିଆ ଆପେ ସ୍ୱାନମାନ ।।
ଆପଣା ଇଚ୍ଛାରେ ଶୋଏ ଆପେ ଫେରିଉଠେ ।
ଆପେ ହୋଇ ଛୋଟମୋଟ ଆପଣେ ନିକୁଟେ ।। (ବ୍ର.ନି.ଗୀ· ୪ର୍ଥ ଅଧ୍ୟାୟ)

ଭୀମଭୋଇ ଏହିପରି ଭାବରେ ବହୁସ୍ଥଳରେ କଠିନ ଆଧ୍ୟାତ୍ମିକ ଭାବର ବ୍ୟାଖ୍ୟାପାଇଁ ବିରୋଧାଭାସର ପ୍ରୟୋଗ କରିଅଛନ୍ତି । ତାହାଙ୍କ ରଚନାରେ ପ୍ରତୀକ ଓ ପ୍ରହେଳିକାର ପ୍ରୟୋଗ ମଧ୍ୟ ଦେଖିବାକୁ ମିଳେ ।

ବଳବାଡ଼ି ନାହିଁ କରୁଛନ୍ତି ହଳ
ବିହନ ନ ବୁଣି ଫଳୁଅଛି ଫଳ ।
ମେରଖଲା ନାହିଁ ଧାନ ମଳୁଆଇ
ନ ରଖି ହଳିଆ ଗୋଡ଼ ହେ ।। (ଭ.ମା.—୫୫)

ଭୀମଭୋଇ ପ୍ରାତ୍ୟହିକ ଜୀବନର ଚଳନ୍ତି ଭାଷାରେ ତାଙ୍କର କାବ୍ୟ କବିତା ରଚନା କରି ଅଛନ୍ତି । ସ୍ଥଳବିଶେଷରେ ସେ ଲୋକ ପ୍ରଚଳିତ କେତେକ ଫାର୍ସି ଶବ୍ଦର ଏବଂ ସମ୍ବଲପୁର ଅଞ୍ଚଳରେ ବ୍ୟବହୃତ ଆଞ୍ଚଳିକ ଶବ୍ଦର ପ୍ରୟୋଗ କରିଛନ୍ତି । ତାଙ୍କ ଭାଷାରେ ଯାଏ, ଯାନ୍ତି ସାହାସ୍ତ, ସୋହିତ ଆଦି କେତେକ ପ୍ରାଚୀନ ପ୍ରୟୋଗ ଦୃଷ୍ଟ ହେଲେହେଁ ଏହାର ପ୍ରାଣ ଆଧୁନିକ । ଏ ଭାଷା ସାର୍ବଜନୀନ ଓ ସର୍ବଜନବୋଧ । ସର୍ବଜନବୋଧ 'କଥିତ ଭାଷାରେ ସୁକଠିନ ଆଧ୍ୟାତ୍ମିକ ଭାବ ସମୂହର ପରିପ୍ରକାଶ ଭୀମଭୋଇଙ୍କ ଅନନ୍ୟ କବି ପ୍ରତିଭାର ପରିଚାୟକ । ଜଗନ୍ନାଥ ଦାସଙ୍କ ପରି ସେ ଓଡ଼ିଆ ଭାଷାରେ ସଂସ୍କାର ଆଣି ଏହାକୁ ଯୁଗୋପଯୋଗୀ କରିଛନ୍ତି । ଭୀମଭୋଇ ତାହାଙ୍କ କାବ୍ୟ କବିତାରେ ଭାଷାର ଯେଉଁ ପରମ୍ପରା ସୃଷ୍ଟି କରିଗଲେ ପରବର୍ତ୍ତୀ କାଳରେ ପଦ୍ୟରେ ନନ୍ଦକିଶୋର ବଳ ଏବଂ ଗଦ୍ୟରେ ଫକୀରମୋହନ ସେନାପତି ତାର ସାର୍ଥକ ଅନୁକରଣ କରି ଯଶସ୍ୱୀ ହୋଇଛନ୍ତି । ଓଡ଼ିଆ ସାହିତ୍ୟର ଅନ୍ୟତମ ଯୁଗନିର୍ମାତା ରୂପେ ସେ ଚିରକାଳ ସ୍ମରଣୀୟ ହୋଇ ରହିବେ ।



# ମହାପୁରୁଷଙ୍କ ଜୀବନୀ

ଶ୍ରୀକୃଷ୍ଣ
ଶ୍ରୀମତ୍ ଶଙ୍କରାଚାର୍ଯ୍ୟ
ଶ୍ରୀ ରାମକୃଷ୍ଣ ପରମହଂସ
ସ୍ୱାମୀ ବିବେକାନନ୍ଦ
ଶ୍ରୀ ଅରବିନ୍ଦ
ପ୍ରବୁଦ୍ଧଗୁରୁ ମହିମାସ୍ୱାମୀ
ଗୁରୁ ନାନକ
ଶ୍ରୀଚୈତନ୍ୟ
ଗୌତମ ବୁଦ୍ଧ
ମହାଯୋଗୀ ଗୋରଖନାଥ
ଶ୍ରୀ ରାମାନୁଜାଚାର୍ଯ୍ୟ
ସୁର ଦାସ
ସ୍ୱାମୀ ଶିବାନନ୍ଦ
ସ୍ୱାମୀ ଦୟାନନ୍ଦ
ପରମହଂସ ଯୋଗାନନ୍ଦ
ସ୍ୱାମୀ ନିଗମାନନ୍ଦ
ମୀରାବାଈ
ନରସିଂହ ମେହେଟା
ସନ୍ଥ ଜ୍ଞାନେଶ୍ୱର
ସନ୍ଥ ଏକନାଥ
ସନ୍ଥ ତୁକାରାମ
ସନ୍ଥ କବୀର
ରମଣ ମହର୍ଷି
ସ୍ୱାମୀ ରାମତୀର୍ଥ
ସନ୍ଥ ରାମଦାସ
ସିରିଡ଼ି ସାଇବାବା
ମହାପୁରୁଷ ସ୍ୱାମୀ ଶିବାନନ୍ଦ
ଶ୍ରୀ ଅଭିରାମ ପରମହଂସ
ଭକ୍ତ କବି ଭୀମ ଭୋଇ
ମୋ ଜୀବନକାହାଣୀ (ବାପୁଜୀ)
ଲୋକମାନ୍ୟ ବାଳଗଙ୍ଗାଧର ତିଳକ
ଲାଲା ଲଜପତରାୟ
ମହାନ୍ ବିପ୍ଳବୀ ଚନ୍ଦ୍ରଶେଖର ଆଜାଦ
ରାମମୋହନ ରାୟ
ଶହିଦ୍ ଭଗତ ସିଂହ
ଶହୀଦ କୁଅଁର ସିଂହ
ପଣ୍ଡିତ ଜବାହରଲାଲ ନେହେରୁ
ଶ୍ରୀମତୀ ଇନ୍ଦିରା ଗାନ୍ଧୀ
ନେତାଜୀ ସୁଭାଷଚନ୍ଦ୍ର
ଏମିତି ଥିଲେ ଆମ ବାପୁଜୀ
କୃଷ୍ଣ ଚରିତ
ଆମ ମଧୁବାବୁ
ଶ୍ରୀ ଜୟଦେବ
ଉପେନ୍ଦ୍ର ଭଞ୍ଜ
ବିଶ୍ୱକବି ରବୀନ୍ଦ୍ରନାଥ
ଉତ୍କଳଗୌରବ ମଧୁସୂଦନ
ମହାମାନବ ଗୋପବନ୍ଧୁ
ଜ୍ୟୋତିର୍ବିଜ୍ଞାନୀ ପଠାଣୀ ସାମନ୍ତ
ନେତାଜୀ ସୁଭାଷ
ମହାମନା ମଦନମୋହନ ମାଲବ୍ୟ
ଫକୀରମୋହନ ଆତ୍ମଜୀବନ ଚରିତ
ଲାଲବାହାଦୁର ଶାସ୍ତ୍ରୀ
ମହାକବି କାଳିଦାସ
ଦିଗ୍‌ଦର୍ଶକ
ଇନ୍ଦୁରୁ ପ୍ରଧାନ ମନ୍ତ୍ରୀ
ଜୀବନ ପଥେ (ରମାଦେବୀ
ବୁଦ୍ଧ ମହାଚରିତ
ମୋ ନିଜ କାହାଣୀ- ୧ମ, ୨ୟ
(ପଣ୍ଡିତ ଜବାହାରଲାଲ୍ ନେହେରୁ)
ଉତ୍କଳମଣି ଗୋପବନ୍ଧୁ
ଦେଶପ୍ରାଣ ମଧୁସୂଦନ
ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ
ମୋର ସ୍ଥାନ (ପଣ୍ଡିତ ଗୋଦାବରୀଶ ମିଶ୍ର)
ଟଲଷ୍ଟୟ ଜୀବନୀ ଓ ଜୀବନଦର୍ଶନ

ପ୍ରକାଶକ/ପ୍ରାପ୍ତିସ୍ଥାନ – ଗ୍ରନ୍ଥମନ୍ଦିର, କଟକ-୨